# ବାଘୁଆ ପବନ

*(ଉପନ୍ୟାସ)*

*ଲେଖକ :*

**ରାଜେନ୍ଦ୍ର ପ୍ରସାଦ ଦାସ**

*ପ୍ରକାଶକ :*

**ଶ୍ରୀ ଲଳିତା ପ୍ରକାଶନୀ**
ଭି.ଆଇ.ଏମ. ୫୮୧
ଶୈଳଶ୍ରୀ ବିହାର
ଭୁବନେଶ୍ୱର - ୭୫୧୦୨୧

*ପରିବେଷକ :*

**ସୁବର୍ଣ୍ଣରେଖା**
କଟକ ରୋଡ଼
ଲକ୍ଷ୍ମୀସାଗର ଛକ
ଭୁବନେଶ୍ୱର - ୭୫୧୦୦୬

*ଅକ୍ଷର ସଜ୍ଜା :*
ଶ୍ରୀ ଲଳିତା କମ୍ପ୍ୟୁଟରସ୍

*ମୁଦ୍ରଣ :*
ପ୍ରିଣ୍ଟଟେକ ଅଫସେଟ୍
ଭୁବନେଶ୍ୱର

*ପ୍ରଚ୍ଛଦ :*
ଦୀନନାଥ ପାଠୀ

*ପ୍ରଥମ ମୁଦ୍ରଣ :* ୨୦୦୪
*ମୂଲ୍ୟ :* ଟ ୩୬/-

ISBN 81-88218-00-6

**BAGHUA PABANA**

*(A novel)*

*Author :*

**RAJENDRA PRASAD DAS**

*Publisher :*

**Sri Lalita Prakashani**
VIM - 581
Sailashree Vihar
Bhubaneswar - 751021

*Distributor :*

**Subarnarekha**
Cuttack Road,
Laxmi Sagar Chhack
Bhubaneswar -751006

*DTP :*
Sri Lalita Computers

*Printing :*
Print-tech Offset
Bhubaneswar

*Cover :*
Dinanath Pathy

*1st Edition :* 2004

*Price :* **Rs.36/-**

ବଣରେ ଘର । ହେତୁ ହେଲାଦିନୁ ଜାଣିଥିଲି ବାଘ ମାତେ । ଆଉ ବି ଜାଣିଥିଲି, ବାଘ ମାତିବାର ହେଲେ ଆଗେ ବାଘୁଆପବନ ସେ ଖବର ସମତିଙ୍କି ପହଁଚେଇବ । ମାତ୍ର ଥରୁଟିଏ । ଏ ଯେମିତି ସେମିତି ପବନ ବୋହିବା ନୁହେଁ । ଥିବ ଥିବ ସବୁ କେମିତି ଥମ୍ ହୋଇଯିବ । ପତ୍ରଙ୍କ ଖଡ଼୍‌ଖାଡ଼୍ ଚଢ଼େଇଙ୍କ କିଚିରି ମିଚିରି ଏମିତିକି ମୂଷା ଚୁଚୁନ୍ଦ୍ରାଙ୍କ କୁଦାକୁଦି ଓ ଚେଁ ଚାଁ ସବୁ ଥମିଯିବ । ଟିକକ ପାଇଁ ବିଶ୍ୱ ବ୍ରହ୍ମାଣ୍ଡ ଯେମିତି ଚେତାହରେଇ ଥିର ହୋଇଯିବ । ସେଠୁ ଆସିବ ଦମକାଏ ପବନ । ସେଥିରେ ପରା କିମିତି ଗୋଟେ ଉଷୁମୁଳିଆ ବାସନା ଥିବ ! ସେଇଟା ସମତେ ବାରିପାରନ୍ତି ନେଇଁ । ସେମିତି ପୋଖତ ଶାଣଦିଆ ନାକ ହେଲେ ଯାଇଁ ଜାଣିବ । ବାସ୍, ସେଇ ଦମକାଏ ପବନ । ସେଠୁ, ସବୁ ଯାହାକୁ ତାହା ହୋଇଯିବ । ଚଢ଼େଇ ରାବିବେ । ପତ୍ର ଖଡ଼ଖାଡ଼୍ ହେବେ । କଣ୍ଟା ବାଉଁଶ ବୁଦା ସନ୍ଧିରେ ପବନର ସୁସୁରି ବାଜିବ । ଜାଣ, ଗଂଜେଇ ନିଶାର ପହିଲି ଝୁଙ୍କଟା କଟିଯିବ । ଜାଣିବା ଶୁଣିବା ଲୋକେ ଘଟଣାଟା କଳିନେଇ ସମତିଙ୍କି ହୁସିଆର କରିଦେବେ । ସମସ୍ତେ ଝଅଟ ଝଅଟ କାମ ଦାମ ସାରିଦେଇ ତାଟି କବାଟ ପକେଇଦେବେ । ବାଘ ମାତିବ । ସବୁ ହବ ସଂଜ ପହରକ ବିତିବା ଆଗରୁ ।

କାହିଁକି ନା, ଆମ ଗାଁ ଠାକୁରାଣୀମାନଙ୍କର କଡ଼ା ହୁକୁମ୍, ଯାହାର ଯାହା ଉତ୍ପାତ, ପହରିକିଆ ବିଲୁଆଡ଼ାକ ଆଗରୁ ଯେମିତି ସରେ, ନହେଲେ ବୁଢ଼ାକେନ୍ଦୁଆ-ଭୁଆସୁଣୀ-ବୀରବଲ କେହିହେଲେ ତାକୁ ସାହାପକ୍ଷ ହେବନାହିଁ । ତେଣିକି ତା କଲାକର୍ମ ସେ ଭୁଞ୍ଜିବ । ଏ ହୁକୁମ ଖାଲି ଜନ୍ତୁଜନ୍ତା ନୁହନ୍ତି, ଭୂତପ୍ରେତ, ଡ଼ାଆଣୀ-ଚିରୁଗୁଣୀ, ଖବିସ-ବ୍ରହ୍ମରାକ୍ଷସ ସମତିଙ୍କି ଲାଗୁ । ମଣିଷକୁ ବି । ସେଥିପାଇଁ ସେଡ଼େ କଳିହୁଡ଼ି ହେଇବି ସୁନେଇମା' ପହରିକିଆ ବିଲୁଆଡ଼ାକ ଆଗରୁ ତା କୁହାଟ ବନ୍ଦକରି କତରା ଧରେ ।

ସେମିତି ହିସାବ ଯୋଖିଲେ ଆମର ତିନି ନୁହନ୍ତି, ଚାରି ଠାକୁରାଣୀ । ମାତ୍ରକ, ଜାଗୁଲେଈ ବୁଢ଼ୀର ଭିନେ ଥଳି ନାଇଁ । ବୁଢ଼ୀ ହୋଇଗଲାଣି, ପୁଣି ବାତେଇ ମଣିଷଟା । ତା ବେଳେ ସେ ଢ଼େର୍ କରିଚି । ଅବିକା ନାତି ନେଖା ବୀରବଲ ପାଖରେ ଅଛି । ସେଇ ବୀରବଲ ତା ସେବା ଯତ୍ନ କରେ । ତେଣୁ ଆମ ହିସାବରେ ଜାଗୁଲେଈ ନଥାଏ ।

ଆମ ଠାକୁରାଣୀ ତିନିହେଁ କେହି କାହାରିକି କମ୍ ନୁହନ୍ତି । ବୁଢ଼ାକେନ୍ଦୁଆ ଆମ ଗାଁର କୋଣକ ଆଗରୁ ଗୋଟେ ଅଷ୍ଟବାଙ୍କ ଆବୁଆ କେନ୍ଦୁମୂଳେ ବିଜେ କରିଚି । ବୁଢ଼ାକେନ୍ଦୁଆ ଆଉ ବୀରବଲ୍ ମରଦ ହୋଇ ଠାକୁରାଣୀ ବୋଲାନ୍ତି କିମିତି ବୋଲି ସାଉଅଜାଙ୍କୁ ଥରେ ପଚାରିଥିଲି । ସେ କହିଲେ, 'ଆହେ ନାତି, ଇସ୍କୁଲ ଯାଉଚ । କେତେ କ'ଣ ଇଟିସିଟି ପଢ଼ା କରୁଚ, ଏ ଇଲମ୍ ବୁଝିଲ ନେଇଁ ! ହଉ ଛାଡ଼, ତେମେସବୁ ଆଜି କି କି ବଦମାସି କରିଚ ?' ମତେ ଚିଢ଼ି ମାଡୁଥିଲା ।

ବୁଢ଼ାଟା ଜାଣିବାର ବୋଲି ପଚାରିଦେଲି ଯେ ମୋ କଥାର ଜବାବ ନଦେଇ ଇଆଡୁ ସିଆଡୁ ବକିଲାଣି ! ତତ୍ରାଚ ବୁଢ଼ାଲୋକ, ମାନ୍ୟଲୋକ । ତାଙ୍କ କଥାର ଜବାବ ଦବାକୁ ହବ । କହିଲି, 'ନାଇଁ, ସେମିତି କିଛି ହେଇନି । ନୁରିଆଟା ଆଜି ଆସିନଥିଲା । ତେବେ ସୁକୁଟୀ ବାଟରେ କୋଉଠି ତା ସିଲଟ ଖଡ଼ି ପକେଇଦେଇ ମାଷ୍ଟଙ୍କ ଆଗରେ ଫେରାଦ ହେଲା - ମୋ ଖଡ଼ି କିଏ ନେଇଗଲା । ମାଷ୍ଟ୍ରତ ଗୋଟାପଣେ ସୁକୁଟୀପଟ । ତା ବାପ ଫି ହାଟପାଳି ଡାଲାଏ ନେଖାଏ ଖଇ ଉଖୁଡ଼ା ପଠେଇଦଉଚିନା ! ମାଷ୍ଟ୍ରେ ଏଡ଼େ ପାଟିକରି କନିଅର ଛାଟ ଉଞ୍ଚେଇ ଆମ୍ଭକୁ ଭଉତ ଗାଳି ଫଜିତ୍ କଲେ । ଯୋଗକୁ ସୁନେଇମା ପୋଖରୀପାଣି ସାରି ଫେରନ୍ତି, ବାଟରୁ ଖଡ଼ିଟା ଗୋଟେଇ ଇସ୍କୁଲ ଧଡ଼ାପାଖରେ ଚିଲ୍ଲେଇଲା-ଆରେ ଅଳପେଇଷାଏ, ଏ ଖଡ଼ିଟା କିଏ ଫୋପାଡ଼ିଚ ? ଆମ ବଡ଼ଚାଟ ଗୋବରା ଖେପାକେ ତା ପାଖରେ ହାଜର ହୋଇ ଖଡ଼ିଟା ଆଣି ମାଷ୍ଟ୍ରଙ୍କୁ ବଢ଼ଉ ବଢ଼ଉ ସୁକୁଟୀ ପାଟିକଲା, 'ଏଟାତ ମୋରି ।' ମୋ କଥା ସରିନେଇ ସାଉଅଜା ଟୋକିଦେଲେ, 'ହଉ ହେଲା, ହେଲା ତେବେ ତେମେ ଯେ ବୋଇଲ ଆମ୍ଭକୁ, ଏ ଆମ୍ଭକୁ କିଏ ?' 'ମଲା ଆମ୍ଭକୁ ! ସଭିଙ୍କି, ସବୁ ସାଙ୍ଗପିଲାଙ୍କୁ ।' 'ତମସାଂଗରେ ଏବେ ଆଉ ଝିଅ ପଢୁଚନି ନା ନାହିଁ ?' 'ପଢୁଚନ୍ତି । ସୁକୁଟୀ କଥା ପରା କହୁଥିଲି ।' 'ହଁ, କହିନା ଆଉ କ'ଣ । ତମେ ପିଲା ତେବେ କେମନ୍ତେ କହିଲ ।' 'ମଲା, ପୁଅ ପିଲା, ଝିଅ ପିଲା, ସମତେ ତ ସାଙ୍ଗପିଲା, ପିଲା ନକହି କ'ଣ କହିବି ?'

ଅଜା ଫୋକଲା ପାଟିରେ ଖଳଖଳ ହସିଦେଇ କହିଲେ, 'ସେଇକଥା ପରା । ମର୍ଦ ଠାକୁରାଣୀ, ମାଇ ଠାକୁରାଣୀ, ସମତେ ଠାକୁରାଣୀ । ଦେଖୁନା ହାଡ଼ିଆକୁ କାଳିସୀ ନାଗିଲେ ଠାକୁରାଣୀ ବିଜେ ହୁଏ, କୋଉଥର ବୁଢ଼ା କେନ୍ଦୁଆ ତ କୌଉବର୍ଷ ଭୁଆସୁଣୀ । ତମେ ପିଲାଏ ଯେମିତି ପୁଅ ହୁଅ କି ଝୁଅ ହୁଅ, ପିଲା, ସେଇଦେରେ ବୁଢ଼ା ହଉକି ଭୁଆସୁଣୀ, ସମତେ ଠାକୁରାଣୀ । ସାଉଅଜାଙ୍କ କଥା ପୂରା ନହେଲେବି ମୋଟା ମୋଟି ମାନି ନେଇଥିଲି ।

ହଁ, ଆମ ଠାକୁରାଣୀମାନଙ୍କ କଥା କହୁଥିଲି । ବୁଢ଼ାକେନ୍ଦୁଆତ ଗାଁଠଉଁ କୋଶକ ଆଗରୁ ଛେକିଛି । ଆଇଲାଲୋକ ସେଠି ମୁଣ୍ଡିଆଟିଏ ମାଇଲେ ଯାଇଁ ଗାଁ ମୁହାଁ ହୁଅନ୍ତି । ସେମିତି ଗାଁରୁ ଗଲାବେଳେ ବୁଢ଼ାକୁ ମୁଣ୍ଡିଆଟିଏ ପକେଇ କହିଦେଇଯାନ୍ତି-ପିଲାକବିଲା ଘରବାଡ଼ି ତତେ ନାଗିଲା । ଯୋଉ କାମରେ ଭା'ରିଚି ସିଧ୍ୟହେଲେ ଚିଲମଟିଏ ଦେବି । ଖାଲି କାମସିଧ୍ୟ ହେବାଟା ବୁଢ଼ାପାଇଁ ଅଧିକା ବୋଝ । ପିଲାକବିଲା ଘରବାରି ଦାୟିତ୍ୱ ତ ସହଜେ ବୁଢ଼ାର ।ସେଥିପାଇଁ ଅଧିକା ପାଉଣାକଥା ଉଠେନା । ନିତି ଦିନଆ କାମପାଇଁ ଗାଁ କୋଠ ଅଛି । ଧାନ ଅମଳ ବେଳେ ଫିଘରୁ ହଳାଏ ଦିଆଯାଏ । କାମଟା ସିଧ୍ୟ ନ ହେଲେ କ'ଣ ହେବ କୁହାଯାଏନା । ବୁଢ଼ା ଛାଏଁ ସମଜିଯାଏ । ତା ମନ ଓପରେ କଥାନାଇଁ । ସିଧ୍ୟକଲେ କରିବ, ନହେଲେ ନାଇଁ । ଭୁଆସୁଣୀ ଥିବାଯାଏ ଚିଲମପାଇଁ ବୁଢ଼ାର ଚିନ୍ତାନାଇଁ । ବୀରବଲଟା ତ ଆପୁବାଲା । ଭୁଆସୁଣୀଟା ପଣା ତେଣ୍ଡେ । ତେବେ ବୁଢ଼ା ଥରେ ଥରେ ତା ହାତୀ, ବୀରବଲର ଘୋଡ଼ା ଆଉ ଭୁଆସୁଣୀର

ବାଘପାଇଁ ଚିଲମଟେ ଦବାକୁ ମନକଲେ, ଅଧିକା ଚିଲମ ଲୋଡ଼ାପଡ଼େ ଆଉ ସେଥର ଯେଡ଼େବଡ଼ ଅସାଧ୍ୟ କାମ ହଉପଛେ ସିଧ୍ୟ ହୋଇଯାଏ ।

ବୁଢ଼ାଠଉଁ ଗାଁ ଯାଏ କୋଣକରେ, ଦିପଟେ ଭାରି ଗହଳିଆ ବଣ । ଡେଙ୍ଗାଡେଙ୍ଗା ବେଁରୋଟ ଶାଳ, ଚିମ୍ପା ବଡ଼ଛତିଆ ମହୁଲ, ଫଡ଼ା ଫଡ଼ା ଉଲୁରୁଥିବା କଳାବକଳପିନ୍ଧା କେନ୍ଦୁ, ସରୁସରୁ ପତ୍ରଘିନି ସବୁବେଳେ ଥରଥର ହଉଥିବା ଅଁଳା, ଆଉ କେତେନା କେତେ ଆକାଶଛୁଆଁ ଶିମିଳି । ମଝିରେ ରାସ୍ତାଦାଢ଼ରେ ଝଙ୍କାଳିଆ ପାଞ୍ଚୁଟା ବର । ଠାଏ ଠାଏ ମୋଟ ଗଣ୍ଡିବାଲା ଦାଲୁକା ଦାଲୁକା କୁସୁମ । ଆଉ, ରାସ୍ତାକୁ ଦିପଟୁ କୁଣ୍ଢେଇ ଧରିଲାପରି ଧାଡ଼ି ଧାଡ଼ି କଣ୍ଟାବାଉଁଶି ବୁଦା । ବୁଢ଼ାଠଉଁ ଗାଆଁ ଆଡ଼େ ଯିବା ବେଳକୁ ବାଘୁଆ ବର ତଳେ ମାଙ୍କଡ଼ା ପଥର ଚଟାଣ ଉପରେ ବାଘେଇ ଝରର ଝିରି ଝିରି ପାଣିଧାର । ବରଠଉଁ କୋଡ଼ିଏ ପଚିଶ ହାତ ତଫାତରେ ଯୋଉଠି ପଥର ସରି ମାଟି ଆରମ୍ଭ ହୋଇଚି, ସେଇଠି ଗେଙ୍ଗୁଟିଆ ଝୋଲା । ବର୍ଷା ଚାରିମାସ ବାଘେଇ ଝର ବାଘପରି ଗର୍ଜି ଚଟାଣ ଓପରୁ କୁଦାମାରେ । ସେଇ ତୋଡ଼ରେ ଦିଚାରିଗୁଣ୍ଠ ଆକ୍ରାନ୍ତରେ ଶଗଡ଼ଚକାପରି ଗୋଲହୋଇ ଏ ଝୋଲାଗାଡ଼ । ଭାରୀ ଗହୀର । ତା ଚାରିପାଖ ଅତଡ଼ା ଅତଡ଼ାଏ ବଙ୍କାଟଙ୍କା କଣ୍ଟାବାଉଁଶ ବୁଦାଗୁଡ଼ା କଣିହାତ ଛନ୍ଦାଛନ୍ଦି ହୋଇ ଛତିଟିମାନ ଓପରକୁ ଟେକି ହାତଧରାଧରି ହେଇ ଓହ୍ଲେଇଯାଇଥାନ୍ତି ଯେ, ଝୋଲାପାଣି ଓପରୁ ଦେଖାପଡ଼େ ନାଇଁ । ସେଇ ନିଘଂଚ ବୁଦାଗୁଡ଼ାକ ଭିତରେ ସାପପରି ବଙ୍କା ଆଉ ସରୁଆ ଦଣ୍ଡିଟା ପଡ଼ିଥାଏ । ଜନ୍ତୁ ଜୁନ୍ତା ଖରାଦିନେ ପାଣିମନ୍ଦେ ପାଇଁ ସେଇ ଦଣ୍ଡିଏ ଦଣ୍ଡିଏ ଗଡ଼ନ୍ତି । ଥରେ ଥରେ ବାହୁତାଣି ହୁଦସ୍ତ ଓପରକୁ ଉଠି ସଡ଼କ ସେପଟ ବାଉଁଶୁଣୀପଛରେ ନୁଚିଯିବା ଆଗରୁ କିଏ ହାବୁଡ଼ିଗଲେ ଟାକୁ ଖଣ୍ଡିଆ ଖାବରା ସିନା କରିପକାନ୍ତି, କେଭେ ମାରନ୍ତି ନାହିଁ । ଏଇଟା ଆମ ଗାଁ ରାସ୍ତାର ଶେଷ ଘାଟି । ଏଇଟା ପାରେଇ ଗଲେ ଜଣେ ମଳିଧୂଳି ନ ନାଗି ଗାଁରେ ପହଞ୍ଚିଯିବ । ବାଘ କାମୁଡ଼ାଠଉଁ ବାଘ ଘୋଷରାକୁ ତ ସମତିଙ୍କର ବେଶୀ ଡ଼ର । ସେଥିପାଇଁ ଆମ ଗାଁ ରାସ୍ତାର ଏଇ ଶେଷଘାଟିଟା ଦେଖାଗଲାଖିଣି ଆମେ ବୁଢ଼ା, ବୀର ଆଉ ଭୁଆସୁଣୀଙ୍କି ଡାକିବା ଆରମ୍ଭ କରିଦଉଁ ଯେ ବାଘେଇ ଝରଠୁଁ ପାଏଖଣ୍ଡେ ବାଟଯାଇ ଦୀବ୍ବଲକୁସୁମ ଦେଖାଯିବାଯାଏ ଡାକି ଚାଲିଥାଉ ।

ବୁଢ଼ାକେନ୍ଦୁଆଠୁଁ ତିନିପା ବାଟଗଲେ ବୀରବଲର ଥଳି । ତା ଆସ୍ଥାନ ଗୋଟେ କୁସୁମଗଛତଳେ । ବୀରବଲ ହେଲା ବୁଢ଼ାକେନ୍ଦୁଆର ଟୋକା ଚେଲା । ବୀରଠଉଁ ପଶ୍ଚିମରେ ନାକସଲଖା ତିନିପା ଛାଡି ଡୁବୁରିତଳେ ଝଙ୍କା କୋଚିଲାମୂଳେ ଭୁଆସୁଣୀର ଆସ୍ଥାନ । ଭୁଆସୁଣୀ ବିଜେଥଳି ବୋଲି ଡୁବୁରିଟା ନାଁ ଭୁଆସୁଣୀ ପାହାଡ଼, କୋଚିଲାଟିବି ଭୁଆସୁଣୀ କୋଚିଲା । ଅସଲରେ ଏ ଡୁବୁରିଟା ବୁଢ଼ା ଆଉ ଭୁଆସୁଣୀ ଦିପରାଣୀଙ୍କର ନିଜଘର । ଭୁଆସୁଣୀ ବିଚାରୀ ଘର ଆଗୁଳେଇ ପଡ଼ିଚି । ବୁଢ଼ା ରଷିଯାଇ କେନ୍ଦୁମୂଳେ ବଇଚି । ତେବେ ବରଷକରେ ଥରେ ଦିପରାଣୀପରା ଏକାନ୍ତ ହୁଅନ୍ତି । ସକାଳ ନ ହଉଣୁ ବୁଢ଼ା ପୁଣି ରାଗିଯାଇ କେନ୍ଦୁମୂଳକୁ ପଳାଏ ।

ଭୁଆସୁଣୀ କୋଚିଲା ମୂଳେ ଅନେଇଥାଏ ସଂଇହବାକୁ ।

ପହରିକିଆ ବିଲୁଆଡାକର ଟିକିଏ ଆଗରୁ ବୁଢ଼ା ତା ଚିଲମ ଫୋପାଡ଼ି ଦେଇ ହାତୀପିଠିରେ ବସେ । ବୀରବଳ କୁସୁମ ଗଛତଳେ ଆପୁନିଶାରେ ଢ଼ୋଳଉଥାଏ । ବୁଢ଼ାର ହାତୀ ଲମ୍ଵା ଥୋର ପାହାର ବଢ଼େଇ ଶୂନ୍ୟେ ଶୂନ୍ୟେ ବୀରକୁ ଟେକିନେଇ ତା ଘୋଡ଼ାଓପରେ ନଦିଦିଏ । ସବାରିର ବୋଝ ପାଇ ଘୋଡ଼ା ଦଉଡ଼େ । ହାତୀ ପାହୁଲପକେଇ ଝୁଲିଝୁଲି ପିଛାକରେ । ଦିହେଁ ଏକାବେଳେ କୋଚିଲା ମୂଳେ ହାଜର ହୁଅନ୍ତି । ଘୋଡ଼ାର କଦମଚାଲିରେ ବୀରବଲର ଆସକତି କଟିଯାଇଥାଏ । ସେ ଚଟାପଟ୍ ଘୋଡ଼ାରୁ ଓହ୍ଲେଇ ହାତୀକୁ 'ବୈଠ, ବୈଠ,' କହେ । ହାତୀ ମାଣ୍ଡେଇ ପଡ଼ିଲେ ବୀର ବୁଢ଼ାର ହାତଧରି ହାତୀପିଠିରୁ ଓହ୍ଲେଇଦିଏ । ବୁଢ଼ା ହୁକୁମରେ ବୀର ସରଘର ପେଡ଼ିରୁ ଭୁଆସୁଣୀର କଳାମେଘୀ ଶାଢ଼ି, ଝୁମୁକା କଠଉ, ପାଉଞ୍ଜି, କାନନୋଳି, ନାକବସଣି, ହାତର ତାଇତ, ବଳା ଆଉ କଳାକାଚ, ଗଳାର ପାନପତ୍ରିହାର ଆଉ କଣ୍ଠି, ମଥାର ସୁନ୍ଥା ଆଉ ମଥାମଣି ଆଣି ବୁଢ଼ାହାତକୁ ବଢ଼େଇଦିଏ । ବୁଢ଼ା ସବୁ ଆଏଅଳଙ୍କାର ଆସ୍ଥାନତଳି କଳାପଥରରେ ସଜେଇ ଗୋଟି ଗୋଟିକରି ଭୁଆସୁଣୀକି ପିନ୍ଧେଇଦିଏ । ବୁଢ଼ା ଭୁଆସୁଣୀକି ବେଶକଲାବେଳେ ବୀର ସରଘର ସିନ୍ଦୁକରୁ ହାତୀର ଘଣ୍ଟ, ଘୋଡ଼ାର ଘାଗୁଡ଼ି, ବାଘର ଘଣ୍ଟି ବାହାରକରି ଯେଝା ଯେଝା ବେକରେ ବାନ୍ଧିଦିଏ । ବୁଢ଼ାର ବେଶକରିବା ସରି ଆସୁଥାଏ । ବୁଢ଼ା ଚକାପକେଇ ବସିଥାଏ । ଭୁଆସୁଣୀ ଠିଆ ହୋଇଥାଏ । ଆଏ ଅଳଙ୍କାର ପିନ୍ଧେଇସାରି ବୁଢ଼ା ଭୁଆସୁଣୀ ପାଦତଳିକି ହାତବଢ଼ାଏ । ଭୁଆସୁଣୀ ଜିଭକାଢ଼ି ପକେଇ ଏକାଖେପାକେ ବାଘଓପରେ ବସି ବୀରକୁ ଡାକେ । ବୀର ବୁଢ଼ା ହାତରୁ ଅଳତାଦାନି ଆଣି ଭୁଆସୁଣୀ ପା'ତଳିରେ ସରୁ ଅଳତା ଧାରେ ଲେଖାଏ ଦେଇଦିଏ । ବୁଢ଼ା ଠିଆହେଇପଡ଼ି ଗାରୁଗାରୁ ହଉଥାଏ । ତଥାପି ଅଣ୍ଟାରୁ ଫରୁଆକାଢ଼ି ଭୁଆସୁଣୀମୁଣ୍ଡରେ ସୁନ୍ଦର ନଗେଇଦେଇ କହେ, 'ମତେ ମୋ ଶାଶୂ ପାଖରେ ଅସତିଆ କରୁଚୁ । ତୋର ଏଇ ଢ଼ଙ୍ଗପାଇଁ ମୁଁ ଯାଇ ସେ ଅପନ୍ତରାଟାରେ ପଡ଼ିଚି । ପା'ଟା ବଢ଼େଇଦେଲ ମୋଠଉଁ ଅଳତାଘିନିଲେ କ'ଣ ଏମିତି ହୋଇଯାଆନ୍ତା ତୋର ?' ଭୁଆସୁଣୀ ଜବାବ ନଦେଇ ଅଣ୍ଟାରେ ଶାଢ଼ିପଣନ୍ତଟା ଗୁଡ଼େଇ ଦେଇ ବାଘର କାନ ମଳିଦିଏ । ବାଘ ଅଳସଭାଙ୍ଗି ଝାଡ଼ିଝୁଡ଼ି ହୋଇ କୁଦାଟେ ମାରି ବାଟ ଧରିଲାବେଳକୁ ବୀର ଘୋଡ଼ା ଓପରେ ସବାର ହୋଇ ଆଗକୁ ଝପଟିଯାଏ । ହାତୀ ପୂରା ଆଣ୍ଠୁ ଭାଙ୍ଗି ବସିପଡ଼ି ଥୋରପାହାର ବଢ଼େଇ ଦିଏ । ବୁଢ଼ା ସେଇ ଥୋରପାହାରକୁ ଶିଡ଼ିକରି ହାତୀଓପରେ ବସୁ ବସୁ ହାତୀ ଉଠିପଡ଼େ । ବୀର ଘୋଡ଼ାକମରରେ ଗୋଇଠିରେ କୁନ୍ଦାମାରେ । ଘୋଡ଼ା ଦଉଡ଼େ । ତା ପଛରେ ବାଘ ଧପାଲେ । ବାଘ ପଛାନ୍ତି ହାତୀ ଆଣ୍ଡୁଗଣ୍ଡି ରଟ ରାଟ୍ କରି ପଳାସେ । ତିନିଠାକୁରାଣୀ ଏମିତି ଆଗପଛହୋଇ ପଲଟଣରେ ରାଇଜବୁଲି ବାହାରନ୍ତି । ବିଲୁଆ ଶଙ୍ଖଫୁଙ୍କେ । ସେଇ ଶବଦ ଶୁଣିଲାମାତ୍ରେ ଭୂତପ୍ରେତ ଅଙ୍ଗ ନୁଚାନ୍ତି । ବାଘସାପ ଭାଲୁଗଧିଆ ସମତେ ଘାଲେଇ କରି ଶୋଇପଡ଼ନ୍ତି । ନହେଲେ, ଯଦି ଠାକୁରାଣୀମାନଙ୍କ ହାବୁଡ଼ରେ ପଡ଼ିଯିବେ କ'ଣ ଯେ ଘଟିବ

କିଏ ଜାଣେ !

ଆମ ଗାଁର ସିମିତି ସିମିତି ଲୋକେ କୁହନ୍ତି ଯେ ରାତିରେ କେବେ କିମିତି କିଏ କିଏ ହାତୀଘଣ୍ଟ, ଘୋଡ଼ା ଘାଗୁଡ଼ି ଓ ବାଘ ଘଣ୍ଟି ଶୁଣିଥିଲେ । ଘାଗୁଡ଼ିର ଗୁଡ୍ର ଗୁଡ୍ର ଗୁଡ୍ର ସାଙ୍ଗରେ ଏକା ଲହରରେ ଘଣ୍ଟିର ଟିଣିଟିଣି ଆଉ ମଝିରେ ମଝିରେ ଘଣ୍ଟର ଢ଼ଂ ଢ଼ଂ । ସେମିତି ପୁଣ୍ୟଥିଲେ ଏସବୁ ଭିତରୁ ଗୋଟେ ଗୋଟେ ଶବଦ କେବେ କେବେ ଶୁଭିଯାଏ । ଭୁଆସୁଣୀ ଝୁମୁକା କଅଉର ଟୁଣ୍‌ଟାଣ୍ ଆଉ ପାଉଞ୍ଜିର ରୁଣୁଝୁଣୁ ବି କେବେ କେବେ ଶୁଭିଯାଏ । ଆକୁ ଶୁଣିଲାପରେ କିନ୍ତୁ ମଣିଷ ଆଉ ଏ ଶରୀରରେ ରହିପାରେ ନାହିଁ । ପଞ୍ଜୁରି ପଡ଼ିରହେ, ଚଢ଼େଇ ଉଡ଼ିଯାଏ ।

କୁଆଁତରା ଉଠିଲାବେଳକୁ ଠାକୁରାଣୀମାନଙ୍କ ରାଇଜବୁଲା ସରେ । କୁମ୍ଭାଟୁଆ ଡ଼ାକିଲା ବେଳକୁ ତିନିହେଁ ନଉଟାଣି ଭୁଆସୁଣୀ ପାହାଡ଼ତଳେ ପହଞ୍ଚିଯାନ୍ତି । ସବୁଦରବ ସରଘରେ ରଖି ବୀରବଲ ତାଲାପକେଇ ବାବାକୁ ଚାବିକାଠି ବଢ଼େଇଦିଏ । ବାବା ଭୁଆସୁଣୀକି ଦିଏ । ଭୁଆସୁଣୀ ପଚାରେ, 'ପୁଣି ଯିବ ?' ବୁଢ଼ାକହେ, 'ଶାଶୁଙ୍କୁ ଦେଇଥିବା ବଚନ ନ ପାଳିବାଯାଏ ଯାଉଥିବି ।' ନଉଟାଣି ବୁଢ଼ାବାବା ଆଉ ଟୋକା ଚେଲା କୁସୁମ ତଳେ ହାଜର ହୁଅନ୍ତି । ଟୋକା ଘୋଡ଼ାରୁ ଓହ୍ଲେଇ ଅଣ୍ଟି ଦରାଣ୍ଡେ । ମହମହ ବାସନା କରୁଥିବା ଗଞ୍ଜେଇ ଭର୍ତ୍ତି ଚିଲମଟିଏ ବୁଢ଼ାକୁ ବଢ଼େଇଦିଏ । ବାବା ହାତରେ ଧରୁ ଧରୁ ଭୂରୁଦିଇଟା ଓପରକୁ ଟେକିଦିଏ, ମାନେ, ପଚାରେ, 'କୋଉଠୁ ଆଣିଲୁ ?' ବୀର ପାହାଡ଼ଆଡ଼େ ହାତ ବଢ଼ାଏ । ବୁଢ଼ା ସମଜେ -ଭୁଆସୁଣୀ ସାରାଦିନବସି ଅସଲି ଏକନମ୍ବର କଲି ଗଂଜେଇବାଛି ଚିଲମଟା ସାଜିଚି ଓ କୋଉ ସୂତରରେ ବୀର ଜିମା ଦେଇଚି । ବୁଢ଼ା ଚିଲମଟା ଧରେ । ବୀରବଲ ଝକମକି ମାରି ନଡ଼ିଆକତା ଧରେଇ ସେଇଟା ଦାଉଦାଉ ଜଳିଲେ ଗୁଳାଟାକୁ ଚିଲମଂରେ ମାଡ଼ିଦିଏ । ବୁଢ଼ା ଦି ମୁଠାରେ ଚିଲମଟା ବାଗେଇଧରି ଓଠପାଖକୁ ନେଇ ଗୋଟେ ଦମ୍ ଟାଣେ । ହାତୀ ଠିଆ ଠିଆ ବୁଢ଼ାକୁ ଥୋର ପାହାରରେ ଟେକିନେଇ ପିଠିରେ ବସାଇ କେନ୍ଦୁମୂଳକୁ ନଉଟେ । ବୁଢ଼ା ଆଉ ଦମେ ଟାଣେ । କେନ୍ଦୁମୂଳରେ ପହଁଚିଲାବେଳକୁ ଆଖି ରଂଗ ପଡ଼ିସାରିଥାଏ । ହାତୀ ସେଇ ହାଲତରେ ବୁଢ଼ାକୁ ପିଠିରୁ ଟେକିଆଣି କେନ୍ଦୁମୂଳ ପିଣ୍ଡିରେ ବସେଇ ଦିଏ । ବୁଢ଼ା ଗଂଜେଇ ନିଶାରେ ଯେତେ ଟୁଳୁ ଟୁଳୁ ହେଲେବି କେବେହେଲେ ଶୁଏନା । ଶୋଇବ କେମିତି ? ମନଟାତ ଛଟପଟ ହଉଥାଏ ।

ଭୁଆସୁଣୀ ତେଣେ କୋଚିଲାମୂଳେ ଭାଳି ହଉଥାଏ । ବୁଢ଼ାକୁ କେମନ୍ତେ ବୁଝେଇବ ଯେ ତା ପାଦରେ ବୁଢ଼ା ଅଳତା ନଗେଇଦେଲେ ଜଗତରେ ରକତନଈ ବୋହିବ । ଜଗତର ମା'ବାପ ହୋଇ କେମନ୍ତେ, ଏମନ୍ତ କର୍ମ କରିବେ ! ସେ ଜାଣେ ଯେ ବୁଢ଼ା ସବୁକଥା ଜାଣେ ଆଉ ଦିନେ ନା ଦିନେ ବୁଢ଼ା କଥାରେ ଭୁଆସୁଣୀ ରାଜିହବ ! ବୁଢ଼ାଠଉଁ ପାଦରେ ଅଳତା ଘିନିବ । ରକତନଈ ବୋହିବ । ପ୍ରଳୟହବ । ପରେ ପରେ ନୂଆ ସର୍ଜନା ହବ । ସେଦିନ କେବେ ଆସିବ ସେଇ ଦିହେଁ ଜାଣନ୍ତି । ଆଉ ଜାଣୁଥିବେ ଜାଗୁଲେଇ ବୁଢ଼ୀ ଆଉ ବୀରବଲ ।

ସେ ଯାହାହବାର ଥିବ ହବ ।ସେ ଯାଏ ବର୍ଷରେ ଗୋଟେ ଦିନ ଦି ପରାଣୀ ଏକାନ୍ତ ହଉଥିବେ । ସେଦିନ ତାଙ୍କ ବାହାଘର । ସଜ ମଙ୍ଗନ, ସଜ ଚଉଠୀ । ବୀରବଲ ଆସ୍ଥାନରେ ବାହାଘର ହୁଏ । ଜାଗୁଳେଇ ପଳାଶମୂଳେ ବେଦୀପଡ଼େ । ବୁଢ଼ା ସେଦିନ ଏଦ୍ଦୁଆନଟୋକା ବେଶହୁଏ । ଭୁଆସୁଣୀକୁ ତା ମା ବେଶ କରାଏ । ଝିଅ ବ୍ୱାଇଁଙ୍କି ବିଦାକଲାବେଳେ ବୁଢ଼ୀ ଡ଼କାପାରି କାନ୍ଦେ-ବୁଢ଼ାର ତ ଘରେ କେହିବୋଲି କେହି ନାହିଁ, ତା ଗେହ୍ଲାଝିଅ କଥା ବୁଝିବ କିଏ ? ବ୍ୱାଇଁ ଶାଶୁଙ୍କୁ ବଚନ ଦିଏ-ମୁଁ ତାର ସବୁ ଆର୍ଦୋଳି କରିବି । ତମେ ବେସ୍ତ ହୁଅନା । ତମ ଦେଖାରଖା ପାଇଁ ବୀରବଲକୁ ମୋତନ କଲି । ଝିଅବ୍ୱାଇଁ ଡୁବୁରି ତଳକୁ ଯାଆନ୍ତି । ଡୁବୁରିଟା ପରା ବୁଢ଼ାର ଘର । ବରକନିଆ ଏକାନ୍ତ ହୁଅନ୍ତି । କୁଆଁତରା ଉଠିଲା ବେଳକୁ ଭୁଆସୁଣୀ ଖଟରୁ ଉଠିଲାବେଳକୁ ଦେଖେ- ବେଶବାସ କିଛି ନାହିଁ । ବଡ଼ ମୁସ୍କିଲ କଥା, ଭୁଆସୁଣୀଟା ଏ ଅବସ୍ଥାରେ ଘରୁ ଗୋଡ଼କାଢ଼ିବ  କେମିତି, ସକାଳ ଗାଧୁଆ ପାଧୁଆ କରିବ କେମିତି ? ବୁଢ଼ାକୁ ହଲେଇଦିଏ । ନିଜ ଦିହ ଆଉ ବେଶଭୂଷାକୁ ଇସାରା କରେ । ବୁଢ଼ା ମହାଖୁସିରେ ଭୁଆସୁଣୀକି ବେଶ କରେ । ଅଳତା ଲଗେଇବାକୁ ଗଲାବେଳକୁ ଭୁଆସୁଣୀ ଗୋଡ଼ ଘୁଂଚେଇ ନିଏ । ବୁଢ଼ା ଠିଆହୋଇ ପଡ଼ି ସୁଛାରେ ସୁନ୍ଦର ନଗେଇଦେଇ ଗାରୁଗାରୁ ହୁଏ, 'ମତେ ବଚନ ଭ୍ରଷ୍ଟ କରଉଚୁ ! ତୋ କଥା ତୁ ସମ୍ଭାଳେ, ମୁଁ ଚାଲିଲି ।' ଭୁଆସୁଣୀ ରାଗିଯାଏ । ବୁଢ଼ୀ ସେଇ ପଳାଶତଳେ ବସି ଝିଅ ବ୍ୱାଇଁଙ୍କ କଳିଆ ଦେଖେ ଆଉ ଶୁଣେ । ବର ଜିଗରକରେ-ଶାଶୁଙ୍କୁ ଯେତେବେଳେ କଥାଦେଇଚି ସବୁ କରିବି, ଅଳତା ବି ନଗେଇବି । କନିଆଁ କହେ, 'ତମେ ସବୁ କଲନା  ମୁଁ  ନିଜେ କଲି ? ସବୁହେଲା, ମାତ୍ରକ ପା'ତଳିରେ ହାତ ଦିଆଇ ଦେବିନାଇଁ କି ତମହାତରୁ ଅଳତା ଘିନିବି ନାଇଁ ।' ବୁଢ଼ା ରାଗିଯାଏ । ଦିହିଙ୍କ ଭିତରେ  ଟାଣଟାଣ କଥା ଚାଲେ ।-କଥା ମାଙ୍କୁ ମାଙ୍କୁ ମୋଟ ହୁଏ । ଭୁଆସୁଣୀ ବୁଢ଼ାକୁ ଗଞ୍ଜୋଡ଼, ବାରବୁଲା, ଖପରାଖିଆ ଆଦି କହି ଝିଙ୍ଗାସେ । ବୁଢ଼ା ତାକୁ ଅଣ୍ଡିରୀ ଚଣ୍ଡୀ, ବଳେପଣି, ଅମାନେଇ ଓଗେର ଓଗେର କହେ ।

ବୁଢ଼ା ଶୂନ୍ୟେ ଶୂନ୍ୟେ କେନ୍ଦୁମୂଳକୁ ଉଡ଼ିଗଲାବେଳେ ଭୁଆସୁଣୀର କଥା କାନରେ ପଡ଼େ- ବିଲୁଆ ପହରିକିଆ ଡ଼ାକିବା ଆଗରୁ ରାଇଜବୁଲା ପାଇଁ, ଆସିବ । ମୋ ମା ତମ ଜଗତରଭାରା ସବୁଦିନେ ବୋହିପାରିବ ନେଇଁ ।

ସେଇ ବାହାଘର ରାତିକ ଜାଗୁଳେଇ ପଳାଶତଳୁ ଖାଲି ଆଖି ବୁଲେଇ ବୁଲେଇ ଜଗତ ସମ୍ଭାଳେ । ଆଗଦିନ ବୁଢ଼ାର ଚିଲମ ନଥାଏ କି ଭୁଆସୁଣୀ ପାଦରେ ଅଳତା ନଥାଏ । ସହଜେ ତ ଆଗ ସଂଜରେ ଠାକୁରାଣୀମାନଙ୍କ ରାଇଜବୁଲା ହୁଏନାହିଁ । ସେ ରାତିରେ ଗାଁରେ କେହି ଶୁଅନ୍ତି ନାହିଁ । ଗାଉଣା ବାଜଣା ନାଚ ଜୋର ଚାଲେ । ସକାଳ ହେଲେ ସବୁ ଥମିଯାଏ । ଲୋକମାନେ ଗାଧୁଆ ପାଧୁଆ ସାରି ସାରାଦିନ ଓପାସ କରନ୍ତି । ସୂର୍ଯ୍ୟବୁଡ଼ିଲେ ଯାହାଟିକିଏ ଭୋଗରାଗ ପାଆନ୍ତି । ଦିନସାରା ବି ଜାଗୁଳେଈ ବୁଢ଼ୀ ନିଘା ରଖିଥାଏ ଆଉ ଝିଅବ୍ୱାଇଁଙ୍କ କଥା

ଭାବୁଥାଏ । ମନକୁ ବୋଧ ଦଉଥାଏ, 'ହ, ଘରକରି କୋଉ କଳି କଜିଆ ହଉନେଇଁ !' ସେଠୁ ଛାଏଁ ଛାଏଁ ହସିପକାଏ-କି ଅଭିଲାକଥା ପାଇଁ ଏ କଳି ! ଅଲକ୍ଷଣାଟା କହୁଛି ଶାଶୁକୁ ଯେବେ କଥାଦେଇଚି ଅଲବତ୍ ପାଳିବି, ହକନାକ୍ ଅଳତା ପିନ୍ଧେଇବି । ଚଣ୍ଡୀଟା କେମନ୍ତେ ଏମନ୍ତ କରେଇବ ବିଚାରି ନାଇଁ ନାଇଁ କରୁଚି । କ'ଣ ହୁଅନ୍ତା ଏବେ ବୁଢ଼ାକୁ ପାଦଦିଇଟା ବଢ଼େଇଦେଇ ଅଳତା ଦିପାଟି ଘିନିଲେ ! ଏମିତି ଭାବିଲାକ୍ଷଣି ଜାଗୁଲେଇ ଜିଭଟା କାମୁଡ଼ିପକାଏ-କେଡ଼େ କଥା ନ କହୁଥିଲା ସିଏ ! ପଳାଶମୂଳେ ବସି, ସବୁଆଡ଼କୁ ନିଘାକରି ତକେଇଥାଏ, ସଂଙ୍ଗରେ କେତେବେଳେ ହାତୀପିଠିରେ କ୍ବାଇଁ ଆସିବେ !

ଏଇ ଠାକୁରାଣୀମାନଂକ କରାମତିରେ ଆମେସବୁ ବଡ଼ ନିଶ୍ଚିନ୍ତ ଥାଉ । ଥରେ ଥରେ କିନ୍ତୁ ଅଘଟଣ ଘଟେ ।

ସେଥର ଚାରିଦିନ ଚାରି ରାତି ଝଡ଼ବର୍ଷା । ନଈନାଳ ବିଲବାରି ସବୁ ଜଳାର୍ଣ୍ଣବ । ବେସୁମାର୍ ଗଛ ଉପୁଡ଼ି ପଡ଼ିଥାଆନ୍ତି । ଆମେ ସବୁ ଘରର ଚାରିକାନ୍ଥ ଭିତରେ ବନ୍ଦୀ ହୋଇ ତ୍ରାହି ତ୍ରାହି ଡ଼ାକୁଥାଉ । ଚତୁର୍ଥରାତି ଶେଷ ପହରକୁ ଝଡ଼ ବତାସ ଥମିଯାଇଥାଏ । ପାହାନ୍ତାବେଳକୁ ବିରାଟ ହାଉଁଆ ଗର୍ଜନ ସାଙ୍ଗକୁ ଧପାସ୍ ଧପ୍ସାସ୍ ଶବ୍ଦରେ ମୋ ନିଦଭାଙ୍ଗିଗଲା । ଦେଖିଲାବେଳକୁ ଘରେ ଆଉମାନେ ଉଠି ପଡ଼ିଲେଣି । ଡିବିରିଟିଏ ମଞ୍ଜି ମିଞ୍ଜି ଜଳୁଥାଏ । ସାଇର ଆଉ ଆଉ ଘରୁବି ଦିକି ଦିକି ଆଲୁଅ ଦିଶୁଥାଏ । ଗାଁଟାଯାକ ଉଠିପଡ଼ିଲେଣି ଯେମିତି ! ପଡ଼ିଶାଘର ମଣିଅଜାଙ୍କ କଥା ଶୁଭିଲା । କହୁଥାନ୍ତି, 'ହୁସିଆର, କେହି କବାଟ ଫିଟେଇବ ନେଇଁ ।' ତାଙ୍କ ପଡ଼ିଶା ଦାମାଭାଇ ଯୋଡ଼ିଲା, 'ବୁଝିଲ ଅଜା, ସେ ମତୁଆଲା ମାହାବଳଟା ଢ଼େରଦିନୁ ସୁକୁଟାଘର ମଇଁଷି ଗୋଠର ସେଂ ଗରୁଆ ପଣ୍ଡାଟା ଓପରେ ଆଖିପକେଇଲାଣି ! ଗୋଠପାଖ ଝାଟିରେ ସୁକୁଟା ତା ପନ୍ଝାଚିହ୍ନ ବି ଚାରିଥର ଦେଖିଲାଣି ! ଏବେତ ଏ ଚାରିଦିନ ଚାରିରାତି ଝଡ଼ ଲାଗିରହିଛି । ପ୍ରାଣ ବିକଳରେ ଜନ୍ତୁଜୁନ୍ତା କିଏ କୋଉଠି ପଡ଼ିଚନ୍ତି । ମାହାବଳଟା ଚାରିଦିନ ଓପାସିଆ । ଆଜି ପଣ୍ଡାଟା ଓପରକୁ ଡ଼େଇଁଲାବେଳକୁ ସେ ମହାଚାଉଁଳା ପଣ୍ଡାଟା ମାରିଚି ଡ଼ିଆଁ । ବାଘ ଆଉ ପଣ୍ଡା ଗୋଡ଼ିଆ ଗୋଡ଼ି ହେଇ ଖଣ୍ଡ ମଣ୍ଡଳଟା ତଷିଦେଲେଣି । ହେଲେ ବାଘଆଗରେ ମଇଁଷିଟା କି ଛାର । ତାକୁ ବାଘ ନବ । ହେଲେ, ବାଘୁଟା ବଡ଼ ଅଧର୍ମକଲା । ଠାକୁରାଣୀମାନଂକ ଆଜ୍ଞା ଲଂଘନ କଲା । ପାହାନ୍ତାପହରଟାରେ ମଇଁଷିଟାକୁ ଖାଇବସିଲା, ଭଲଗତି ନାହିଁ ତାକୁ ।' ମଣିଅଜା କହିଲେ, 'ବାଘ ଗର୍ଜନରେ ମୋ ନିଦଟା ଭାଂଗିଗଲା । ଥୋଡ଼େ ସମୟ କାନେଇଲି । ଭାବୁଥିଲି ବାଘ ଗୋଟେ ବଡ଼ ସମ୍ବରକୁ ପିଛାକରିଚି କି କ'ଣ ! ତୁ କେତେବେଳୁ ଉଠିଲୁଣିକି?' ଦାମଭାଇ କହିଲା 'ଏ ଗୋଡ଼ିଆଗୋଡ଼ି ଆଗରୁ ମୋ ନିଦଟା ଚାଉଁକିନା ଭାଙ୍ଗିଗଲା । ଦେଖିଲି ସବୁ କିମିତି ଥମିଯାଇଛି । କୁଆଡୁ କିଛି ସୋରଶବଦ ନାହିଁ, ତାପରେ ହଠାତ୍ ଦମକାଏ ପବନ । ବାପା ମତେ ବାଘୁଆପବନ କଥା କହିଥିଲେ । ତମେ ବି ତ କେତେଥର କହିଚ-କେବେ କେବେ ବଣରେ ତମେ ବାଘୁଆପବନକୁ ହାବୁଡ଼ିଚ । ତେବେ ଆଜି ତ କିଛି ଗନ୍ଧବାସନା ଥିଲାପରି

ନାଗିଲାନେଇଁ ।' 'ନାଇଁରେ ଦାମ' ମଣିଅଜା କହିଲେ, 'ଉଷୁମୂଳିଆ ବାସନାଟା ଥିବ ଯେ, ଏ ବର୍ଷାପାଣି ହେମାଳରେ ଘୋଡ଼େଇପୋଡ଼େଇ ହେଇ ବାରିପାରିନଥିବୁ ।' 'ହେଇଥିବ ।'

ସେ ଦିହେଁ ବଡ଼ ପାଟିରେ କଥାହଉଥିଲେ । ଆମ ସାଇସାରା ସମତେ ଏକଥା ଶୁଣିଥିବେ । ଏତିକିବେଳେ ଦୂରରୁ ଗୋଟେ ଗଁ ଗଁ ରଡ଼ି ଶୁଭିଲା-ବଡ଼ ବିକଳ ରଡ଼ି ସେଇଟା । ଜାଣିଲୁ ବାଘ ପଣ୍ଡାଟାର ଷଣ୍ଢା କଣାକରିଦେଲା । ଟିକକ ପରେ ଧପ ଧପ ଶବ୍ଦ ସାଂଗକୁ ପାଣିର କଳକଳ ଛଳ ଛଳ ଆବାଜ-କିଏ ଯେମିତି କ'ଣ ଘୋଷାରି ନଉଚି ପାଣିଭିତରେ ! ଜାଣିଲୁ ଏଡ଼େ ପଣ୍ଡାଟାକୁ ବାଘ ପିଠିରେ ବୋହିନପାରି ଷଣ୍ଢାକାମୁଡ଼ି ଘୋଷାରି ନଉଚି ।

ଆଉ ଟିକକପରେ ଡୁବୁରି ଆଡୁ ଢ଼ୋ ଢ଼ୋ ଦିଇଟା ଗୁଳି ଶବ୍ଦ । ଦାମା ଭାଇ ପାଟିକଲା, 'ମଲା ବାଘୁଟା । ଜଗା ବାଣୁଆ ଛକିଥିଲାକି କ'ଣ, ଦେଇଚି ନାଛି ।' ଦାମାଭାଇ କଥା ସରିଚିକି ନାଇଁ, ଗାଆଁ ସାରା ଲୋକେ ଆଣ୍ଠୁଏ ପାଣିରେ ନାକ ସଳଖା ଡୁବୁରିଆଡ଼େ ଦଉଡ଼ିବା ଆରମ୍ଭ କରିଦେଲେ । କି ପାଟି ! ପଡ଼ି ଉଠି ହୋ ହୋ ହେଇ ଧାଇଁଛନ୍ତି ! ମୋ ମନଟା ବି ହଉଥିଲା ଡୁବୁରିଆଡ଼େ ଧାଇଁଯିବାକୁ । ମାତ୍ର ମା ଡରରେ ଦାଣ୍ଡପିଣ୍ଡାରୁ ଅନେଇ ରହିଲି ଯାହା ।

ସକାଳ ହେଲା । ପରିଷ୍କାର ଆକାଶ । ଚାରିଦିନ ବା'ଦେ ଖରାପଡ଼ିଲା । ବହୁତ ଭଲ ଲାଗୁଥାଏ । ଡୁବୁରିତକୁ ଲୋକଙ୍କର ଗୋଳ ଶୁଭୁଥାଏ ।

କଅଁଳ ଗାଧୁଆ ବେଳକୁ ଭୁଆସୁଣୀ ପାହାଡ଼ ଆଡୁ ହୁ ହୁଲ୍ଲୋଡ଼ର ଆବାଜ ଗାଁ ଆଡ଼େ ଗଡ଼ି ଆସିଲା ପରି ଲାଗିଲା । ଏଥର ଆଉ ମା' କଥା ନ ଭାବି ମୁଁ ଦାଣ୍ଡଧଡ଼ା ଫିଟେଇ ଶଗଡ଼ ଗୁଳା ପାଖରେ ହାଜର ହୋଇଗଲି । ପାହାଡ଼ ତଳି ତଇଲା ପରେ ଧାନବିଲ । ବିଲମାଳିଆ ପାରେଇଗଲେ ପାଖ ଗାଁକୁ ଯିବାର ଶଗଡ଼ ରାସ୍ତା । ତା ଦିପଟରେ ବୁଦୁବୁଦିକିଆ ବଣ । ସେଠୁ ଗୋଟେ ସାନ ଆମ୍ବତୋଟା । ସେତକ ସରିଲେ ପୁଣି ବିଲମାଳିଆ ଭିତରେ ଆମ ଗାଁର ରାସ୍ତା । ଖାଲି ଘୋ ଘା, କୁହାଟ ଓ ହସ ଶୁଭୁଥାଏ ସିନା, ତୋଟା ପାଖଯାଏ ନ ଆସିଲେ କିଛି ଦେଖାଯିବା କଥାନୁହେଁ । ବେଶ୍ କିଛିବେଳ ଗଲା । ଖରା ଟାଣହୋଇ ଆସୁଥାଏ । ଘୋ ଘା ଲହରେଇ ଲହରେଇ ପାଖକୁ ଲାଗିଆସୁଥାଏ । ତୋଟା ଭିତରୁ ଲୋକ ଗହଳି ଆଖିରେ ପଡ଼ିଲା । ଆଉ ଟିକପରେ ସବୁ ସାଫ୍ ହୋଇଗଲା । ଗୋଟେ ଶଗଡ଼ ଓପରେ ବାଘଟା ଶୋଇଚି । ଶଗଡ଼କୁ ପଂଝାଏ ଭିଡ଼ିଭିଡ଼ି ଆଣୁଚନ୍ତି । ପଛରେ ଥାଟ ପଟାଳି ଭାଙ୍ଗୁଚନ୍ତି ଆମ ଗାଁ ସମେତ ପାଖ ଆଖ ଗାଁର ପିଲା, ଟୋକା, ବୁଢ଼ା, ମାଇପେ ଓ ଝିଅ ଥୋଡ଼ାଏ । ସୁକୁଟୀକି ଆଉ ନୁରିଆକୁ ବି ଦେଖିଲି । ଗାଆଁ ଦାଣ୍ଡରେ ଶଗଡ଼ ପହଞ୍ଚିଗଲା । ନାନାଲୋକଙ୍କର ନାନା କଥା ଶୁଭି ଯାଉଥାଏ । କିଏ କହୁଥାଏ, 'ଏଇଟା ବୁଢ଼ା କେନ୍ଦୁଆ ଖଣ୍ଡିର ବାଘୁଆ ପାହାଡ଼ର ମାହାବଳ । ଖୋଦ୍ ବୁଢ଼ାକେନ୍ଦୁଆ ଆର ମାଲିକ ।' ଆଉ କିଏ କହୁଥାଏ, 'ହେଲେ କ'ଣ ହେଲା, ଏଡ଼େ ଅଧର୍ମ କଲା ! ବୁଢ଼ା ଓପ୍ରୋଧ ଛାଡ଼ିଦେଇ ଜଗାବାଣୁଆ ଗୁଳିରେ ଭରକଲା-ନହେଲେ ଦୋନଳୀଟାର ସାଧ୍ୟନାହିଁ

ବାଘଟାକୁ ମାରିବ !' ଆଉ ଜଣେ ଯୋଡ଼ିଲା-ଯା'ହଉ, ବୁଢ଼ା ଏକୁ ବାଘ ଜନମରୁ ପାରିକରିଦେଲା ।

ବାଘଟା ସେଇମିତି ଶଗଡ଼ ଓପରେ ଥାଏ । ସତିକା ଖାଇପିଇ ଗୋଡ଼ହାତ ଢାକି ଆରାମରେ ଅୟେସ୍ କରୁଚି ! ଶଗଡ଼ ଭିଡ଼ା ହଉଥାଏ । ଯିଏ ପାରି ସିଏ ହାତବଢ଼େଇ ବାଘନିଶ ଓପାଡ଼ି ଆଣୁଥାନ୍ତି । ସନ୍ତକ ରଖିବେ ନହେଲେ ଜନ୍ତୁ ଜୁନ୍ତାଙ୍କ ହାବୁଡ଼ରୁ ବର୍ତ୍ତିବା ପାଇଁ ତାବିଜଭିତରେ ପୂରେଇ ଗଳାରେ ବାନ୍ଧିବେ । ମାହାବଳଟାକୁ ଗାଁ ସାରା ବୁଲେଇ, ସମତିଙ୍କି ଦେଖେଇ ସାରିବା ପରେ ଜଗାବାଣୁଆ ତାକୁ ହୁସିଆରୀରେ ଛାଲି, ଭିତରେ ଓଷଦପତ୍ର ପୁରେଇ, ଚମଭିତରେ ତୁଳା, ତୁଷ ଓ କଟା କୁଟା ପୁରେଇ ପୁଣି ତା ପୁରୁଣା ରୂପ ଦେବ ଓ ବାଘଟା ତା ଘର ଜଗୁଆଳ ହେଇ ରହିଯିବ । ସେଥିପାଇଁ ନିଶପୁରା ନ ଓପାଡ଼ିବାକୁ ସେ ଯେତେ କହିଲେ ବି କେହି ଶୁଣୁ ନଥାନ୍ତି । ଶେଷକୁ ଜଗା ଗୋଟେ ବାଟ ବାହାରକଲା-ବାଘ ପାଟିଟା ହାଁ କରେଇଦେଲେ ଲୋକେ ତା ମଡ଼ାଟା ପାଖକୁ ସହଜରେ ଭରସିବେ ନେଇଁ । ଗୋଟେ ପାକଳ ବାଉଁଶ କାଠିକୁ ମାପରେ କାଟି ବାଘପାଟି ମେଲାକରି ତଳପାଟି ଓପରପାଟି ଫାଙ୍କକରି ଢ଼ିରା ନଗେଇଦେଲା । ଏଥର ବାଘଟା ଦୃଶିଲା - ଯେମିତି ଝାମ୍ପ ମାରିବାକୁ ତିଆର ହଉଚି । ପିଲାଗୁରା କରଛଡ଼ା ଦେଇ ରହିଲେ । ମାତ୍ର ଟୋକାଂକ ବାହାଦୁରି ଦେଖେଇବା ଆରମ୍ଭ ହୋଇଗଲା । ଜଣକବାଦେ ଜଣେ ଡ଼ାହାଣ ହାତଟା ମାନ ବାଘ ପାଟିରେ ଭର୍ତ୍ତିକରି ଦେଇ କାଢ଼ି ଆଣିଲେ । ଏତିକିରେ ସେଗୁରା ପରା ନଳ ବିଦ୍ୟା ହାସଲ କରିନେଲେ, ଏଣିକି ତାଙ୍କ ହାତ ରାନ୍ଧଣା କୁଆଡ଼େ ନାହିଁ ନଥିବା ସୁଆଦିଆ ହୋଇଯିବ ! ସେଇ ଭିଡ଼ ଭିତରେ ଗୋଟେ କିଏ ଅଠର କୋଡ଼ିଏ ବର୍ଷିଆ ଭେଣ୍ଡିଆ ଶଗଡ଼'ଦଣ୍ଡାକାଠ ଓପରେ ଭରାଦେଇ ଉହିଁକି ଯାଇ ବାଘ ପାଟି ଭିତରେ ତା ଠେକାଭିଡ଼ା ମୁଣ୍ଡଟା ଭର୍ତ୍ତି କରିଦେଲା । ପାଟିମେଲା କରେଇଥିବା ଢ଼ିରାଟା ତେଢ଼େଇଗଲା ଓ ବାଘପାଟି ବୁଜିହୋଇଗଲା । 'ମଲା ଶଳା !'କହି, ଜଗାବାଣୁଆ ବାଘ ତଳପାଟିଟାକୁ ମେଲାକରି ଟୋକାଟାକୁ ଓଟାରି ଆଣିଲା । ତା ଠେକୋଟା ବାଘର ଓପର ପାଟି ଛାମୁଦାନ୍ତରୁ ଓହଳି ରହିଲା । ଟୋକାଟା ମୁଣ୍ଡରେ କପାଳଠୁଁ ବାଁ ପାଖ କାନ ଓପରଦେଇ ତାଳୁକାଯାଏ ଖପୁରିରେ ବିଦାରେ ବିଦାରିଲାପରି ଦିଇଟା ଶିଆର । ରକ୍ତ ଧାର ଧାର ଛୁଟିଥାଏ । ତାକୁ ଧରାଧରି କରି ତଳେ ଚିତ୍‌କରି ଶୁଆଇଦେଇ ମୁଣ୍ଡରେ ପଟି ଭିଡ଼ିବା ପାଇଁ ଯୋଗାଡ଼ ଆରମ୍ଭ ହୋଇଗଲା । ଖପୁରି ଓପର ଶିଆର ଦିଇଟାରୁ ବାଳ ସମେତ ଚମଡ଼ା ଉଲୁରି ଯାଇଥାଏ । କିଏ ଗୋଟେ ଧୋତିକପଡ଼ା ପୋଡ଼ି, ସେଇ ପାଉଁଶ ମେଞ୍ଚାକ ଖପୁରି ଓପରେ ମାଡ଼ି ଦେଇ ଉଲୁରା ଚମଡ଼ାକୁ ତା ଓପରେ ଭିଡ଼ି ଭାଡ଼ି ବସେଇ, ଆଉରି ପୁଳାଏ ପାଇଁଶ ଓପରେ ବୋଳି ଚଉକସ କରି ଭିଡ଼ି ଗୋଟେ ଜବର ଠେକା ଭଳିଆ ପଟି ବାନ୍ଧିଦେଲା ।

ଟୋକାଟାର ଚେତା ବୁଡ଼ିଯାଇଥାଏ । ତାକୁ ଟେକି ନେଇ ତା ମା ଜିମା କରି ପିଣ୍ଡାରେ

ମଶିଣାଟେ ପାରି ଶୁଆଇଦେଲେ । ବାଘଟା ତଳମୁହାଁ ହୋଇ ଶଗଡ଼ ଓପରେ ଦରମେଲା ପାଟିକରି ଶୋଇଥାଏ । ଭିଡ଼ ଭାଙ୍ଗୁଥାଏ । ସମସ୍ତେ ଯେମିତି ଭାରୀ ଛାନିଆ ହୋଇପଡ଼ିଚନ୍ତି । ସାଉଅଜା ଆଉ ମଣିଅଜା ଗାଁର ସବୁଠୁ ପୁରୁଖାଲୋକ । ତାଙ୍କ ମନକୁ ମନ୍ଦରାର ଏ କାମଟା ଜମା ପାଉ ନଥାଏ । ସାଉଅଜା କହିଲେ, 'ବାଘୁଟାର ସାହା ଦିହଛାଡ଼ିନଥିଲା ନାଗୁଚି । ଏ ମେଞ୍ଚଡ଼ର ଫୁଟାଣି ମାହାବଳ ଆତ୍ମାପୁରୁଷକୁ ବାଧିଲା । କେଡ଼େ ବହପ ଟୋକାଟାର ! ଯେତେହେଲେ ବାଘୁଆ ପାହାଡ଼ରି ମାହାବଳଟି । ଅଧର୍ମକଲା ବୋଲି ବୁଢ଼ା କେନ୍ଦୁଆ ତାକୁ ସିନା ସାହା ହେଲେନି, ତା ବୋଲି କ'ଣ ମାହାବଳଟା ଛେଳି ହୋଇଗଲା ଯେ ତାକୁ ଏମନ୍ତ ବେଖାତର କରି ଜାଣିଜାଣି ତା ପାଟିରେ ମୁଣ୍ଡଭର୍ତ୍ତି କଲୁ ! ଦେଇଚି ଚେଙ୍ଗେ । ପୁଅ ମନ ଘର ଧରିଯାଇଥିବ !' ମଣିଅଜା କହିଲେ, 'ଯାହା କଇଲ ସାଉପୁଅ । ଶୁଣିନା, ଗୋଟେ ସରକସର ପୋଷାବାଘ ସବୁ ସହୁଥାଏ, ତା ପାଟିରେ ହାତ ଗଳାଠୁ ତା ଖାମିଦର ମୁଣ୍ଡଗଳାଯାଏ, ମାତ୍ରକ ଦିନେ ନା ଦିନେ ପାଟିଟା ଜାବ ପକେଇଦେଲା ! ଏଡ଼େ ଅପମାନ । ସେ ପରା ବଣର ରାଜା ! ଗୁଳିରେ ମଲେବି ତା ଆତ୍ମାପୁରୁଷ କ'ଣ ଦେଖୁନଥିଲା । ଦବନେଇ ଚେଙ୍ଗେ ।' ଜଗା ବାଣୁଆ ଯୋଡ଼ିଲା, 'ନାଇଁ ମଉସା । ଏତିକିରେ ସରିବନେଇଁ । ଆହୁରି ଦବ । ବାଘଟା ଜାଣ ସୂକ୍ଷ୍ମଶ୍ୟରୀରରେ ଏଟା ଭିତରେ ସଂଚରିଗଲା । ବଞ୍ଚିବ କି ନାଇଁ ମନ୍ଦରାଟା କିଏ ଜାଣେ ? ଯଦି ବଂଚିଯାଏ ନା, ବଡ଼ ନରଖର କରିବ ଏଇଟା ଦୁନିଆକୁ ।'

ସେଇ ମନ୍ଦରା ଦିମାସ ବଡ଼ ଡ଼ାକ୍ତରଖାନା ଆଉ ତାପରେ ଚାରିମାସ ତା ମାମୁଁ ଘରେ ରହି ସାଷ୍ଟମହେଇ ନଉଟିଲା । ଦିମାସରେ ତା କୁଞ୍ଚକୁଞ୍ଚିଆ ବାବୁରିବାଳ ଆଉରି ଗହଳ ହେଇଯାଇଥାଏ । ନିଘାକଲେ କାନ ଓପରେ ଧାରୁଟିଏ ଘା-ଗାର ଯାହା ଦିଶୁଥାଏ । ସେ ଆହୁରି ଗୋରା ଫିଟି ଯାଇଥାଏ । ଚେହେରାଟାବି ଆଗଠଉଁ ଗୋଲଗାଲିଆ ହେଇଯାଇଥାଏ । ମନ୍ଦରାର ପିଲାଦିନୁ ଗାଉଣା ବାଜଣା ଆଉ ନାଟକରିବା ସଉକଥିଲା । ଛୋଟା ଓସ୍ତାଦଠଉଁ ସବୁ ସାଧିଥିଲା । ମାମୁଁଘରେ କୋଉ ଠାକୁରାଣୀ ସିନ୍ଦୂରର କଲି ପିନ୍ଧିବା ଆରମ୍ଭ କରିଥିଲା ଯେ, ଗାଁକୁ ଆସିବି କଲି ଟାଣୁଥାଏ ।

ତାକୁ କେତେଥର ମାଛିଅନ୍ଧାର ବେଳେ ଦେଖିଛି । ସେତେବେଳେ ମାଇପିମାନେ ବାହାର ପାଣିକି ଯାଆନ୍ତି ବୋଲି, ମର୍ଦମାନେ ଏ ଆଡ଼େ ଆସନ୍ତି ନାହିଁ । ଅବଶ୍ୟ କେବେ କିମିତି ସାଙ୍ଗନଅସରେ ପିଲା ପଂଝାଏ ବୀରବଲ ଆଉ ବାଘୁଆବର ମଝାମଝି ବଣ ଅରାଟାକୁ ଯାଆନ୍ତି । ମନ୍ଦରା ଦେଖା ପଡ଼ିବା ଆଗରୁ କି କୋଉଦିନ ତା ପଛେ ପଛେ କାଇଁଚକୁ ଦେଖିଚି । କାଇଁଚ, କାଇଁଚକାଠି ପରି ଢ଼େଙ୍ଗୀ ପତଳୀଟିଏ । ମୁଣ୍ଡରେ ଗୋଛାଏ ବାଳ । ପିଲାଦିନେ ବସନ୍ତ ହେଇ ମୁହଁସାରା ଦାଗ । ଆଖିଦିଇଟା ବାଉଁଶପତ୍ରପରି ସରୁ ଆଉ ମୁନିଆଁ । ସାନ ନାକ । ନାକ ପୁଡ଼ାରେ ପିତଳ ମାଛିଟିଏ । କାନରେ ଗିଲ୍‌ଟି ଝୁମୁକା ହଳେ । ବେକରେ ସରୁ କାଇଁଚର ମାଳି । ଛିଟ ନହେଲେ ନସ୍ତା ଶାଢ଼ି ଖଣ୍ଡେ ପିନ୍ଧିଥାଏ । ନୋଟାଧରି ଗଲାବେଳେ ମତେ ହାବୁଡ଼ିଗଲେ ଫିକ୍

କରି ହସିଦିଏ, 'କିରେ ଟୋକା, ଏବେଳରେ ଦାଣ୍ଡଟାରେ ଟହଲମାରୁଚୁ କିଆଁ ?' ମୁଁ ଘରକୁ ପଳେଇଆସେ ।

ଏମିତି କେତେଦିନ ଗଲା । ସେ ବର୍ଷ ଏତେ ବର୍ଷା ନଥାଏ । ଅଶିଣ ମାସ । ପାର୍ବଣପାଇଁ ଆୟୋଜନ ଲାଗିଥାଏ । ଭାଲୁକୁଣୀ ପୂଜା ସରିଥାଏ । ଶେଷପାଳି ଭାଲୁକୁଣୀ ପରଦିନ ଭାଲୁକୁଣୀକୁ ପାଣିରେ ପକେଇବାକୁ ଗଲାବେଳେ ଭାରି ମଉଜ ହୁଏ । ଦିଦଳ ହେଇ ଏକ ଆରେକକୁ ଉଘାନ୍ତି । ଏଥିରେ ପୁଅମାନେ ବି ମିଶନ୍ତି । ସେଥର ଗୋଟେ ପଟେ କାଇଁଚକୁ ଆରପଟେ ମାଳତୀଙ୍କ ଭିତରେ ଭାରି ଝଟାପଟା ଲାଗିଥାଏ । ମାଳତୀଟା ହୁଣ୍ଡୀଟା । ତାକୁ ବେଶୀ ଢ଼ଗ କି ଗୀତ ଜଣା ନଥାଏ । ତାଛଡ଼ା, ତାର ଟିକେ ପାଟିଲାଗେ ଯେ କାଇଁଚ ତାକୁ କଥା କଥାକେ ଘାଉଲା କରୁଥାଏ ।  ଏତିକିବେଳେ ମନ୍ଦରା ମାଳତୀ ପଟିଆ ହେଇ ଏମିତି ଢ଼ମାଳି ଶୁଣେଇଲା ଯେ ସମତେ ତାଟକା । କାଇଁଚ ପହିଲୁ ଟିକିଏ ଦବିଗଲା । ପୁଣି ସାଙ୍ଗେ ସାଙ୍ଗେ ଏମିତି ଓଲଟ ଚୋଟ ପକେଇଲା ଯେ ଧନ୍ୟଧନ୍ୟ ପଡ଼ିଗଲା । ଏ ଦିଜଣଙ୍କ ବାଦିପାଲା ଭାଲୁକୁଣୀଙ୍କି ଉପଲକ୍ଷ କରି ଚାଲିଥାଏ । ଗାଁର ସବୁଦିନିଆ ବାଦ ବୃଦିଆ ଚେଙ୍କାଚେଙ୍କି । ଯେମିତି - ଆମ ଭାଲୁକୁଣୀ ଖୋପାରେ ଚମ୍ପା, ତମ ଭାଲୁକୁଣୀ ହାତୁଟା କେମ୍ପାରୁ ଆରମ୍ଭହେଇ ଆମ ଭାଲୁକୁଣୀ ଖାଇଲା ଖିରି ତମ ଭାଲୁକୁଣୀ ବାଟ ହଗୁରୀ ହେଇ ଆମ ଭାଲୁକୁଣୀ ନାକରେ ନୋଥ ତମ ଭାଲୁକୁଣୀ ଗାଣ୍ଡିରେ ବଥ ଯାଏ ସବୁ ସରିଥାଏ । ମନ୍ଦରା ନୂଆ ଗାନା ଧରିଲା : ଆରେ, ଆମ ଭାଲୁକୁଣୀ ସରଗପରୀ, ତମ ଭାଲୁକୁଣୀ କାଳୀ କୋତରୀ । କାଇଁଚ ଦବାଇଲା  ଯମୁନାପାଣି ତ କାଳୀକୋତରୀ, ହାଡ଼ ଦେରେ ଗୋରୀ  କାଣୀ ତମରି ।

ମନ୍ଦରା, 'ଆମ ଭାଲୁକୁଣୀ କପାଳେ କଲି' କହିଲାବେଳକୁ କାଇଁଚ  ଉବୁକି ପଡ଼ି ଗାଇଲା, 'ଗୋଡ଼ ଅଳତାକୁ ମୁଣ୍ଡରେ ଧରି ତମ କାଣୀ ଯାଏ ବଜାର ବୁଲି ।'

ସେଠୁ ହଲାପଟା ଚନ୍ଦାଚନ୍ଦି ହେଇ ଦିପଟ ଯାକ ଏକାବେଳେ ଏଣ୍ଡୁତେଣ୍ଡୁ ସବୁ ପଦଯୋଡ଼ି ଯାଇଁ ପୋଖରୀକୂଳେ ହାଜର । ସାହୁଅଜା ହାଙ୍କିଲା, 'ହେଇ, ହୁସିଆର ।  ଝିଏ  ଭାଲୁକୁଣୀଙ୍କି ପାଣି ଭିତରକୁ ନେବେ । ତେମେ ଟୋକାଗୁଡ଼ା ତଫାତ୍ ହୁଅ ।' ଦି ସାଇ ଝିଏ ଆପଣା ଆପଣା ଭାଲୁକୁଣୀଙ୍କୁ ଧରି ପୋଖରୀ ମଝି ଆଡ଼େ ଚାଲିଲେ । ପୁଅଯାକ ହୁଡ଼ାରେ ଠିଆହେଇ ରହିଲେ । ହଠାତ୍ 'ମାଲୋ' ବୋଲି ବୋବାଳି ପକେଇ କାଇଁଚ ପାଣିଭିତରେ ବୁଡ଼ିଗଲା । ସତିକା ତା ଗୋଡ଼ କିଏ ଟାଣି ଦେଇଚି । ମନ୍ଦରା ଆଉ ସେଉଠୁ ଆଉ ଆଉ ଟୋକାଏ ଖପାଖପ ପାଣିକି ଡେଇଁ ଗଣ୍ଡଆଡ଼େ ପହଁରିଗଲେ । ସବା ଆଗେ ମନ୍ଦରା । ସେତେବେଳକୁ କାଇଁଚ ଦି ତିନି ବୁଡ଼ା ଦେଲାଣି । ମନ୍ଦରା ତାକୁ ଧରି ପକେଇଲା ଠଉଁ ଦିହେଁ ଏକାଠି ଘଡ଼ିଏ ପାଣିତଳେ ଉଭାନ । ସେଉଠୁ ମନ୍ଦରା କାଇଁଚକୁ ପିଠିରେ ପକେଇ ପହଁରି ପହଁରି କୂଳରେ ନାଗିଲା । କାଇଁଚକୁ ଝିଅମାନେ ବେଢ଼ି ତା ଘରକୁ ନେଇଗଲେ ।

ସାଉବୁଢ଼ା ସମତେ ଶୁଣିଲାଭଳି ମନ୍ଦରାକୁ କହିଲେ, 'ହୁସିଆର ପୁଅ, ବାଘ ମୁହଁରୁ ବର୍ତ୍ତିଲୁ ଯେ, ବାଘୁଣୀ ଦାଢ଼ରେ ଯିବୁ ।'

କିନ୍ତୁ ବାଘୁଣୀଟି ଗଲା । ଶୁଣିଲୁ, କାଇଁଚର କି ଶୂଳବେମାରୀ ବାହାରିଚି ଯେ, ସେ କତରାନଗା ହେଲାଣି । ଦିନେ ସଂଜବେଳେ ହାଟୁଆମାନେ ଗାଁରେ ଖବର ଦେଲେ ଯେ ଗେଙ୍ଗୁଟି ଝୋଲା ବାଉଁଶବୁଦା ଓପରେ ଫଡ଼ା ଫଡ଼ା ଚିରା ନାଲି ଗାମୁଛାଟାଏ ନାଗିଚି - ରକତ ଜୁଡୁବୁଡୁ । ମନ୍ଦରା ଗାମୁଛା ଭଳି ଦୁଉଚି । ମନ୍ଦରା ବି ଗାଁରେ ନାଇଁ ! ଅଶିଣ ମାସ ମହାଷ୍ଟମୀ ଦିନ କାଇଁଚ ଚାଲିଗଲା । ଲୋକେ ସବୁ କ'ଣ ଭୁଟୁଭାଟ ହଉଥାନ୍ତି । କିଏ କିଏ କହିଲେ, 'ଭଲ ହେଲା । ଗୋଟେତ ଯମ ମୁହଁରେ ଗଲା । ଆରୁଟାକୁ ସତରେ ବାଘନେଲା ନା ଆଉ କିଛି ଫିସାଦି କରିଚି କିଏ ଜାଣେ ?' ସେଉଠୁ ଦିନେ କାଇଁଚ ମାଆର ସଁପା ଶୁଭିଲା । ତା ମୁଣ୍ଡକୁଆଡ଼େ ବଗିଡ଼ି ଯାଇଥିଲା । ସକାଳୁ ସଂଜେ ସଁପି ନାଗିଥାଏ, 'ମର୍‌ରେ ଅଲପେଇଷା ମର୍ । ତୋ ବଉଁଶ ବୁଡୁ । ତତେ ବାଡ଼ି ଖାଉ । ତୋ ଠେଇଁ ପୋକ ପଡୁ' ଇତ୍ୟାଦି । ପରେ କିଛି କିଛି ବୁଝିଥିଲି । ଠାକୁରାଣୀମାନଙ୍କୁ ତଥାପି ମାନୁଥାଏଁ । ଯାହାହଉ, ମନ୍ଦରାଟା ତା କଲାକର୍ମର ଫଳ ନପାଇ ଯିବ କୁଆଡ଼େ ? ଧର୍ମତ ପୁଣି ଅଛି !

ବହୁବର୍ଷ ଗଲା । ଆମ ରାଜ୍ୟର ବଡ଼ ସହର । ଚାକିରିରେ ବାରଜାଗା ବୁଲି ଦରବୁଢ଼ା ହେଲାବେଳକୁ ସେଠି ପହଂଚିଲି । ମାଳ ମାଳ କୋଠା । ଲମ୍ବାଚଉଡ଼ା ସଡ଼କ । ସଡ଼କ ଆହୁରି ଲମ୍ବୁଥାଏ । ଆହୁରି ଓସାର ହଉଥାଏ । କୋଠା ତିଆରି ଚାଲିଥାଏ । ନୂଆ ନୂଆ କଲୋନୀ ମନ୍ଦା ମନ୍ଦା ହେଇ ମାଡୁଥାଏ । ଆଇନର ଶାସନ ଚାଲୁଥାଏ । ଟିକସ ବସୁଥାଏ । ଆଦାୟ ହଉଥାଏ । ଦେଶ ଆଗଉଥାଏ । ଦି ଚାରିହଜାର ଦରମାରେ ଦି ଚାରି ଦଶଲକ୍ଷ ଟଙ୍କାର କୋଠା ତିଆରି କରୁଥାନ୍ତି ବଡ଼ ମଝିଲା ସାନ ସମତେ । କାହାର ଚାଷର ମାଣପିଛା ଆଳୁ ଦଶହଜାର ଟନ୍ତ କାହାର ଗାଇପିଛା ଦିମହଣ ଦୁଧ ଆଉ କାହାର ସ୍ତ୍ରୀଙ୍କର କୁକୁଡ଼ା ଚାଷ ଯେ, କୁକୁଡ଼ା ପିଛା ଦିନକୁ ତିନିଲେଖା ଅଣ୍ଡା ହିସାବରେ ବର୍ଷକୁ ୧୦୮୦ ଅଣ୍ଡା ! ସେଇ ଆୟରୁ ପରା ଘର, ଗାଡ଼ି, ପିଲାଙ୍କର ପାଠ ପଢ଼ା ! ମା ମାନେ ଏ ଆୟ କରୁଥାନ୍ତି । ସମାଜ ସେବା ଚାଲୁଥାଏ । ପ୍ରତି ମୋଡ଼ରେ ନଡ଼ବଡ଼ ଅକ୍ଷରର ସାଇନବୋର୍ଡ଼ ଟାଙ୍ଗି ନାରୀ ମଙ୍ଗଳ, କୁଷ୍ଠସେବା, ସାକ୍ଷରତା ଅଭିଯାନ, ବିଜ୍ଞାନ ପ୍ରସାର, ବୃକ୍ଷରୋପଣ, ବନୀକରଣ, ଜଳ ସଂଚୟନ, ଆଦର୍ଶ ଗୃହ ଯୋଗାଣ, କର୍ମ ନିଯୋଗ ସବୁ ଜ୍ୟାମିତିକ ଅଭିବୃଦ୍ଧି ହାରରେ ବଢୁଥାଏ । ଗାଁର ପର୍ବ ପର୍ବାଣୀ ସହରରେ ନୂଆ ବେର ମଡ଼ଉ ଥାନ୍ତି । ଦୋଳ ଦଶହରାତ ଥିଲା । ବିଶ୍ୱକର୍ମା ପୂଜାବି । ରଜଦୋଳି, କୁଆଁର ପୁନେଇଁ, ଭାଲୁକୁଣୀ, କାର୍ତ୍ତିକେଶ୍ୱର ପୂଜା, ଲକ୍ଷ୍ମୀପୂଜା, ନୂଆଖିଆ ଓଗେର ସବୁ ପୂଜା ପାର୍ବଣ ନାଇଲନ ଲୁଗା ପିନ୍ଧି, ମାରୁତି ଗାଡ଼ିରେ ବସି, ଡ଼ିସ୍କୋ ନହେଲେ ବ୍ରେକ୍‌ନାଚ ନାଚି ହେଁ ହେଁ ହେଁହେ'ଗୀତ ଗାଇ ସହରୀ ହଉଥାଆନ୍ତି । ଗଣତନ୍ତ୍ର ଦୃଢ଼ୀକରଣ ସାଙ୍ଗକୁ, ସାଂସ୍କୃତିକ ନବ ଜାଗରଣ, ପୁଣି ଧର୍ମର ପୁନଃ ପ୍ରତିଷ୍ଠା ସବୁ ଜୋର ଚାଲୁଥାଏ । ତେଣେ ଗାଁରେ ବଣ ହଜୁଥାନ୍ତି ।

ପୋଖରୀ ପଙ୍କ ଆଉ ଦଳରେ ଅଣନିଶ୍ୱାସୀ ହେଇ ମାରା ପଡୁଥାନ୍ତି । ଗାଁ ସହରର ବାଲୁକେଶ୍ୱର ଅଣ୍ଡାଯାଏ ପୋତିହେଇ ଗଁ ଗଁ ହଉଥାଆନ୍ତିତ, ତୀର୍ଥେଶ୍ୱର ସାହାଡ଼ା ଆଉ ଆଷାଢୁଆ ନଟିକି ଛତା କରିଥାନ୍ତି । ରାଜରାଜେଶ୍ୱରୀଙ୍କି ଘେରି ପାଇଖାନା ଟାଙ୍କି ହଉଥାଏ । କାଳେଶ୍ୱର ବେଢ଼ାରେ ଆଉ କାନ୍ଥରେ ଦିଆଲୀ ବମ୍ ପଡ଼ି ହିଂସ୍ର ସିଂହ ଗୁଡ଼ା ଗାନ୍ଧୀଦେଶରେ ଦାନ୍ତଭାଙ୍ଗି ଅହିଂସ ହଉଥାନ୍ତି ତ କ୍ରିକେଟ ବଲ ମାଡ଼ରେ ତାରାମନ୍ଦିରର ନଙ୍ଗଳା ମୂର୍ତ୍ତିଗୁଡ଼ା ସ୍ତନରେ ବ୍ରା ପିନ୍ଧୁଥାନ୍ତି । ବଣୀ ଦେଉଳ ଚାରିପିଠି ଖୋଲା ଘୁପଡ଼ିଆ । ଭୈରବ ବେଢ଼ାର ପୁରୁଣା କାମଥିବା ପଥର ଟଂଛା ଆଉ ପାଲିସ ହେଇ ଭଙ୍ଗାପଥର କାନ୍ଥ ଭିତରେ ଖାପୁଥାଆନ୍ତି । ସଂସ୍କୃତି ମନ୍ତ୍ରୀ, ହାକିମ ଓ ସଂସ୍କୃତି ପ୍ରେମୀ ବିଦ୍ୱାନ ଓ ଅଧ୍ୟାପକମାନଙ୍କ ଭାଷଣ, ବିବୃତି, ପ୍ରବନ୍ଧ ବାହାରୁଥାଏ । ଭାଷଣ ଚାଲିଥାଏ । ପଥର ଦେଉଳ ଉଜୁଡ଼ିଲାବେଳକୁ ପାହାଡ଼ ଘେରା ପଥୁରିଆ ବଡ଼ ସହରର ପ୍ରତି ମୋଡ଼ରେ ଇଟା ସିମେଣ୍ଟର ନୂଆଦେଉଳ ମୁଣ୍ଡଟେକି ମନ୍ଦିରମାଳିନୀ ଓଡ଼ିଶାର ପରଂପରା ବଜାୟ ରଖୁଥାଆନ୍ତି । ହୋଟେଲ ଫିଟୁଥାଏ । ଟୁରିଷ୍ଟ ବଢୁଥାନ୍ତି । ବିଦେଶୀ ମୁଦ୍ରା ଆସୁଥାଏ ।

ଆଉ ବଢୁଥାନ୍ତି ଆଶ୍ରମ ଓ ବାବା । ମାଣେ, ଦିମାଣ, ପାଞ୍ଚମାଣ, ଦଶମାଣ ଜାଗା ବାଗେଇନେଇ ବିନ୍ଧ୍ୟାଚଳ, ପଞ୍ଚବଟୀ, ବଦରିକାଶ୍ରମ, ମଧୁବନ, ନିଧୁବନ - ହଁ ନିଧୁବନ ବି ବ୍ୟାପୁଥାଆନ୍ତି । ହଠାତ୍ ତିନିଟା ଘଟଣା ଘଟିଗଲା । ଦିନେ ଖୋଦ୍ ମନ୍ତ୍ରୀଙ୍କ ଫୋନ୍, 'କଣ ସେ ପଶୁପତିନାଥ ଆଦର୍ଶ ମହାବିଦ୍ୟାଳୟର ରିପୋଟ୍‌ଟା ଆଜିଯାଏ ଦେଲେ ନାଇଁ ? ଆଜି ମୁଁ ଯାଉଛି, ବାବାଙ୍କର ନାମଯଜ୍ଞର ଉଦ୍‌ଘାଟନ । ଆପଣ ଆସନ୍ତୁ - ଦେଖିଚାହିଁ ଆସି ରିପୋଟ୍‌ଟା ଦେଇଦେବେ । କାମଟା ସାରିଦବା । ତାପରେ ତ ନିର୍ବାଚନ ଧନ୍ଦାରେ ବେଳ ମିଳିବନି । ହଁ, ଆପଣଙ୍କ ଗାଡ଼ି ଆଉ ଡ୍ରାଇଭର ଆଣିବେ ।'

ହୁକୁମ୍ ସାଙ୍ଗେ ସାଙ୍ଗେ ମନ୍ତ୍ରୀଙ୍କ ପ୍ରାଇଭେଟ ସେକ୍ରେଟେରୀଙ୍କି ସଲାମ୍ ବଜେଇ ମନ୍ତ୍ରୀଙ୍କ ଡ଼ାକକୁ ଅପେକ୍ଷା କଲି । ସେ ଘରେ ଲୋକ ଭର୍ତ୍ତି । କଣପଟିଆ ଠିଆ ହେଇଥାଏ । ଝରକାତଳ ଗଦିଆସନରୁ ଜଣେ ମହିଳା ଡ଼ାକ ପକେଇଲେ, 'ସେଠି କାହିଁକି ଠିଆହେଲେ ? ଏଠିକି ଆସନ୍ତୁ ।' ତାଙ୍କଆଡ଼େ ଚାହିଁ ଭାବୁଥାଏ ବୋଧହୁଏ ଆଉକାହାକୁ କହୁଥିବେ । ଆଲୁଅପଟେ ବସିଥିବାରୁ ମୁହଁଟା ପୂରା ଦିଶୁନଥାଏ । ସେ ପୁଣି କହିଲେ, 'ତମକୁ ଡ଼ାକୁଚି ହେ ନାଟୁବାବୁ ।' ମୋ ପିଲାଦିନର ଏ ନାଁଟା କିଏ କହିଲେ ଇଏ ? ଅଗତ୍ୟା ଗଲି । ସେ ଟିକିଏ ଘୁଞ୍ଚିଯାଇ ଜାଗାକରିଦେଲେ । ଗେଞ୍ଜିହେଇ ବସିଲି । ଦିକରେ ଦିଜଣ ମହିଳା । ନାଟୁବୋଲି ଡ଼ାକିଥିବା ମହିଳା ମୋ କାନରେ ମୁହଁ ଲଗେଇ କହିଲେ, 'କିରେ ଚିହ୍ନୁଚୁ ? ଧୋବଣୀ । ସେଠୁ ଖଣ୍ଡେ ଭିଜିଟିଂ କାର୍ଡ଼ ବଢ଼େଇଦେଲେ । ପଢ଼ିଲି, 'ସୁଶ୍ରୀ ସୁଧବଣୀ ସିଂହ, ସାକ୍ଷରତା ଅଭିଯାନ ସଂଯୋଜିକା, ବୃଦ୍ଧ କନ୍ଦରେଶ୍ୱର ପୀଠ, ତିରିକଣା' । ଧୋବଣୀ କହିଲା, 'ମୂର୍ଖ, ସୁଧବଣୀ ନୁହେଁ, ସୁଧାବାଣୀ । ତେବେ ଏଇନା ବନ୍ଧୁମାନଙ୍କ ପାଇଁ ମୋ ଡ଼ାକ ନାଁ ଶିଶ୍ । କହ, ତୋର କ'ଣ କାମଦାମ ବାକି ପଡ଼ିଥିଲେ କରେଇଦେବି । ମନ୍ତ୍ରୀତ ଆମଲୋକ । ଆଛା ତୁ ସେ ରିପୋଟ୍‌ଟା ଦଉନୁ କାହିଁକି ।

ଆମେ ଆଉ ମୁହଁ ଦେଖାଇପାରୁନୁ ବାବାଙ୍କୁ ।'

କହିଲି, 'ନାଇଁମ, ବହୁତ କାମ । ତାଛଡ଼ା ବୁଝୁନୁ, ସବୁ ଦେଖିଚାହିଁ ରିପୋଟ୍ ନକଲେ ପଛକେ କ'ଣ ଗୋଳମାଳ ହେଲେ, ମୋ ମୁଣ୍ଡଟି ଯିବ ।'

'ଆରେ ଛୋଃ ! ଗୋଳମାଳ କ'ଣରେ ? ଆମେ ଚାହୁଁଚୁ । ମନ୍ତ୍ରୀ ଚାହୁଁଚନ୍ତି । ବାବା ସିଦ୍ଧ ପୁରୁଷ । କେଡ଼େ ବଡ଼ ଲକ୍ଷ୍ୟରେ କଲିଜଟା କରୁଚନ୍ତି । ଦେଖିବୁ, ସବୁ ବଢ଼ିଆ ହବ ।' ମୁଁ ପଚାରିବାକୁ ଯାଉଥିଲି ଯେ ଧୋବଣୀତ ତିରିକଣାରେ ବାହାହେଇଥିଲା । ପାଖରେ ବୁଢ଼ା କେନ୍ଦୁଆ । ଏ ବୃଦ୍ଧ କନ୍ଦରେଶ୍ୱର କ'ଣ ସେଇ ? ସାକ୍ଷରତା ଅଭିଯାନ ସଂଯୋଜିକା ପୁଣି କ'ଣ ? କିନ୍ତୁ ମନ୍ତ୍ରୀଙ୍କ ଡ଼ାକରା ଆସିଲା ମୁଁ ଉଠିବା ଆଗରୁ ଦିମହିଳା ଉଠି ପଡ଼ିଲେ । ଧୋବଣୀ କହିଲା, 'ରହ, ୟାଙ୍କୁ ଚିହ୍ନେଇ ଦିଏଁ । ଇଏ ମାଡ଼ାମ ଝୁମ୍‌କି ଶରଣ । ଓଡ଼ିଆ ମ ! ଆମ ଆଡ଼ର ପାଲା ଗାଆଣ ମଧୁ ଶରଣଙ୍କ ଝିଅ, ଗୋବିନ୍ଦ ଶରଣଙ୍କୁ ବାହାହେଇଚନ୍ତି । ଲଭ୍ ମାରେଜ୍ । ଗୋବିନ୍ଦ କୋଟିପତି । ମାଡ଼ାମ୍ ବାବାଙ୍କ କଲିଜର ପ୍ରିନ୍ସିପାଲ ।' କହିଲି, 'ନମସ୍କାର, ମାଡ଼ାମ୍ ଶରଣ ।' 'ଆରେ ଆପଣ ସୁଧାର ବୟଫ୍ରେଣ୍ଡ ! ମତେ କିସ୍ ଡ଼ାକିବେ ।' ଧୋବଣୀ କହିଲା, 'ବୁଝିଲୁ, ନାଟୁ, ମୁଁ ଯେମିତି ଅନ୍ତରଙ୍ଗ ମହଲରେ ଶିଶ୍ ଇଏ ସେମିତି କିସ୍ । କେମିତି ରୋମାଣ୍ଟିକ୍ !'

ରୋମାଣ୍ଟିକ ନିଶ୍ଚେ । ମନ୍ତ୍ରୀଙ୍କ ଚେମ୍ବରରେ ରୋମାନ୍ସ ଉତୁରି ପଡ଼ିଲା । ମନ୍ତ୍ରୀ ଚଉକିରୁ ଉଠିପଡ଼ି ହସି ହସି ସ୍ୱାଗତ କଲେ, 'ଯାଃ ଏଡ଼େ ଡ଼େରି ହେଇଗଲା । ହଉ ଆସନ୍ତୁ ଶ୍ରୀମତୀ ଶରଣ ଓ ଶ୍ରୀମତୀ ସିଂହ । ଦି ମହିଳାଯାକ ଏକାବେଳକେ ସ୍ୱରରେ ଅଭିମାନ ଫୁଟେଇଲେ । ଖାଲି ସମ୍ବୋଧନରେ ଯାହା ଫରକ - ଧୋବଣୀ 'ଟିମଭାଇ ଆଉ ତମେ' କହିଲା ବେଳକୁ ଝୁମ୍‌କି, 'ସାର୍ ଆଉ ଆପଣ' କହିଲା । ପରକଥା ଏକ ! ସୁର ଏକରକମ । 'ମତେ ଏମିତି ପରକଲେ ଆଉ ଆସିବି ନାହିଁ ।' ମନ୍ତ୍ରୀ ଗଳା ଖଙ୍କାର ମାରି ମୋ ଆଡ଼େ ଚାହିଁ କହିଲେ, 'ଏମାନେ ମୋର ଆପଣା ଲୋକ ତ !' ଝୁମ୍‌କି କହିଲା, 'ସାର୍, ଏ ବାବୁ ଶିଶ୍‌ର ପ୍ରାଗୈତିହାସିକ ଫ୍ଲେମ୍ । ଆମରି ଲୋକ ।'

ମନ୍ତ୍ରୀ ଘରଛାଡ଼ିଲେ । ଆମ ଅଫିସକାରରେ ବସିଲୁଁ । ମନ୍ତ୍ରୀ ଶିଶ୍ ଆଉ କିସ୍‌ଙ୍କ ମଝିରେ, ପଛରେ । ମୁଁ ଡ୍ରାଇଭର ପାଖରେ । ମନ୍ତ୍ରୀ ମତେ ପଚାରିଲେ, 'ଆଚ୍ଛା ମହାଖୁଡ଼ ବାବୁ, ଆପଣଙ୍କ ଡ୍ରାଇଭରର ଜାତି କ'ଣ ?' ଡ୍ରାଇଭର ନିଜେ ଜବାବ ଦେଇ ମତେ ବଂଚେଇଦେଲା, 'ଆଜ୍ଞା, ବ୍ରାହ୍ମଣ, ସେନାପତି ।' ମନ୍ତ୍ରୀ ଖୋଦ ଶାସନୀ । ମୁଣ୍ଡ ନାଡ଼ିଲେ, 'ହୁଁ, ଆଜି ଆଉ ପ୍ରସାଦସେବନ ଆଗରୁ ନୂଆ ପଇତା ନବା ଦରକାର ହବନି ।' ମୁଁ କିଛି ବୁଝିପାରୁନଥାଏଁ । କୋଉ ରାଜ୍ୟ ଏଇଟା ? ଧର୍ମ ଜାତି ନିରପେକ୍ଷ ଭାରତ ? ଧୋବଣୀ କହିଲା, 'ବୁଝିଲୁ ନା ନାଟୁ । ଆମେ ସମସ୍ତେ ବାବାଙ୍କ ଦୀକ୍ଷା ନେଇଚୁ । ସେଠି ସମସ୍ତେ ସମାନ ଯେ ଖାଲି କେଇଟା କଡ଼ା ନିୟମ ! ପ୍ରଥମ ଅନ୍ୟଧର୍ମର ଲୋକେ ଭିତର ବେଢ଼ାକୁ ଯାଇପାରିବେନି, ପତିତପାବନଙ୍କଠୁ ଫେରିବେ ।

ଦ୍ୱିତୀୟ, ଆହାର ଶୁଚିତା ରକ୍ଷାପାଇଁ ସିଡୁଲ ଆଉ ବିଧର୍ମୀ ଲୋକଙ୍କ ସଂସ୍ପର୍ଶରେ ଆସିଲେ, ସ୍ନାନଶୌଚ କରି ଖାଇବାକୁ ହବ । ଆଉସବୁ ତୁ ଜାଣିଯିବୁ ଯେ ।' ଝୁମ୍‌କି ଯୋଡ଼ିଲା, 'ସାର ବଡ଼ ହଇରାଣ ହଉଚନ୍ତି । ତାଙ୍କ ମୁସଲମାନ ଡ୍ରାଇଭର ଗାଡ଼ିଟା ଭିତରକୁ ନେଇ ପାରିବନି ! ତାକୁ ଆଣିଲେ, ଅଧକିଲୋମିଟର ପାଦରେ ଯିବାକୁ ହବ । ପୁଣି ଗାଧେଇ ନୂଆ ପଇତା ନବାକୁହବ ! କୁହନ୍ତୁନା କି କଷ୍ଟ ! ଏଣେ ମନ୍ତ୍ରୀଙ୍କ ନିର୍ବାଚନମଣ୍ଡଳୀରେ ସେମାନେ ପ୍ରାୟ ଅଧେ । ତେଣୁ ତାଙ୍କମାନଙ୍କ ଭିତରୁ କେଇଟାଙ୍କୁ ଚାକିରି ନଦେଲେ ଚଳୁନାଇଁ ।'

ଗାଡ଼ି ପଶୁପତିନାଥେଶ୍ୱର ଆଶ୍ରମ ବାହାର ଫାଟକରେ ପହଂଚିଲା । ସୁନ୍ଦର ତୋରଣ । ତିନିମୋଡ଼ ବାଙ୍କପଟିର ଶାକରପଟାରେ ପଶୁପତି ଶିବ । କହିଲି, 'ବାଃ'। ମନ୍ତ୍ରୀ ଟିପ୍ପଣି କଲେ, 'ବାବା ବିରାଟ ପଣ୍ଡିତ - ପାଞ୍ଚ ପାଞ୍ଚଟା ବିଷୟରେ ଏମ୍‌ଏ । ସେଦିନ ଜାଣିନଥିଲି, ଯେ, କଳାଭବନର ଅଧକ୍ଷ ମୋ ସାଙ୍ଗ ଧ୍ରୁବାନନ୍ଦ ତୋରଣଟିର ଏଇ ନକ୍ସା କରିଥିଲା ଆଉ ନିଜେ ନିଜର ସହକର୍ମୀମାନଙ୍କୁ ଧରି ତିଆରି କରିଥିଲା । ପଇସା ବି ସିଏ ଯୋଗାଡ଼ କରିଥିଲା । କଳାଭବନ କାମରେ ଧ୍ରୁବ ଓ ତା ସାଙ୍ଗଙ୍କ ମୁକରିରହେବା ମନ୍ତ୍ରୀଙ୍କ ଉପରେ ନିର୍ଭର କରୁଥିଲା ।

ଭିତର ବେଢ଼ା । ଫାଟକ ଗୁମୁଟର ପୂର୍ବକାନ୍ଥ ବାହାରପଟରେ ଅର୍ଥାତ୍ ଆମ ବାଁପାଖି ସିମେଣ୍ଟର ପଶୁପତିନାଥ । ଏନାମେଲ ରଙ୍ଗରେ ହରରଙ୍ଗୀ ମୂର୍ତ୍ତି । ମୁଣ୍ଡ ଦିପଟରେ ଶିଙ୍ଗ, ମହିଷାସୁରର ମଇଁଷିଶିଙ୍ଗ ପରି । ମୋଟାମୋଟି ନକ୍ସାଟା ଏକ ପାଞ୍ଚବାଙ୍କ ତୋରଣର । ଦିଂକରଧେ ଆଉ ତଳେ ଓପରେ ବାଘ ସିଂହ ଜିରାଫ ମିରିଗ ଓ ବୃଷଭର ଚିତ୍ର । ମଝିରେ ପଦ୍ମାସନରେ ବସିଥିବା ପଶୁପତିଟି ଜଣେ ଜୀବନ୍ତ ମଣିଷପରି ଦିଶୁଥାନ୍ତି । ବୁଦ୍ଧଙ୍କ ଜଟାପରି କୁଞ୍ଚୁକୁଞ୍ଚୁଆ ବାଳ । ଗୋଲ ମୁଣ୍ଡ,ଗେଣ୍ଡା ନାକ, ମୋଟା ଓଠ, ମୁଣ୍ଡରେ ନେଶିହେଇଗଲା ପରି ବିଲେଇ କାନପରି ଦିଇଟା କାନ । ମୁଣ୍ଡ ଚାରିପଟର ପ୍ରଭାମଣ୍ଡଳରେ ସୂର୍ଯ୍ୟରଶ୍ମି । ସବୁ ଜଣାଅଜଣା ରଙ୍ଗରେ ରଙ୍ଗା ହୋଇଥିବା ବହୁରଙ୍ଗୀ ରୁଚିହୀନ ଗୋଟେ ରିଲିଫ୍ । ଓପରେ ହିନ୍ଦୀ, ବଙ୍ଗଳା, ଓଡ଼ିଆ ଓ ଇଂରାଜୀରେ ଲେଖା - ପତିତପାବନ । ଡ଼ାହାଣ କାନ୍ଥରେ ସେଇମିତି ଚାରିଟି ଭାଷାରେ ବିଜ୍ଞାପନ - ଚମଡ଼ା ଜିନିଷ, ଜୋତା, କ୍ୟାମେରା ଭିତରକୁ ନେବା ମନା । ଗାଡ଼ି ରହିଲା । ମୁଁ ଟଙ୍କା କି ଚାରିଟା ଥିବା ମୋ ପର୍ସରୁ ଟଙ୍କାତକ ପାକିଟିରେ ରଖି, ଖାଲି ପର୍ସ, ବେଲ୍ଟ; ସ୍ୟାଣ୍ଡାଲ ଓହ୍ଲେଇଲା । ମନ୍ତ୍ରୀ ଓ ତାଙ୍କ ଆପଣାଲୋକେ ଆଗରୁ ତିଆର – ସମସ୍ତଙ୍କ ପାଦରେ କଠଉ । ସହନେକ ଧୋତି ଶାଢ଼ି । ଆଉ, ବସ୍‌ଭଡ଼ା କି ଚା' ପାଇଁ ପଇସା ପାଖରେ ରଖିବା ଦରକାର ନାଇଁ । ତେଣୁ ସେମାନଙ୍କର ପର୍ସ ନାହିଁ । ଗୋଟେ ଗେରୁଆ ଜୋବାପିନ୍ଧା ଲୋକ ଆସି ପଲିଥିନ ମୁଣିଟିଏ ମତେ ବଢ଼େଇଦେଲା । ସେତେବେଳଯାଏ ଡ୍ରାଇଭର ସେମିତି ବସିଥିଲା । ଝୁମ୍‌କି ଝଟଣ କହିଲେ, 'କିହୋ ଜୋତା ଫୋତା ଖୋଲୁନ କିଆଁ ? ଗାଡ଼ି, ଭିତରକୁ ଯିବ ଯେ ।' ସେ ବିଚରା ସବୁଖୋଲି ଆଉଗୋଟେ ମୁଣିରେ ରଖିଲା । ଜୋବାପିନ୍ଧା ପହରାଦାର ଦିଇଟା ଯାକ ମୁଣିନେଇ ଗୁମୁଟ କଡ଼ର କୋଠରିରେ ଟଙ୍ଗେଇ ଦେଲା । ଗେଟ୍ ଖୋଲିଲା । ଗାଡି ଗଡ଼ିଲା । ଭିତରେ

ସୁନ୍ଦର ବଗିଚା । ଲନ୍ । ଭଳି କି ଭଳି ଫୁଲ । ହରରଙ୍ଗୀ କଂକ୍ରିଟ ଟାଇଲର ଡ୍ରାଇଭ ୱେ । ଗାଡ଼ି ଗୋଟେ ପୋର୍ଚରେ ଅଟକିଲା । ଆମେ ଓହ୍ଲେଇଲୁ । ଆଉଗୋଟେ ଢୋବାପିନ୍ଧା ଲୋକ ଗାଡ଼ିକୁ ଗୋଟେ ପଟିଆ କରି ପାର୍କିଂ କରିବାକୁ ଡ୍ରାଇଭରକୁ ନିର୍ଦ୍ଦେଶ ଦେଲା ।

ପୋର୍ଚରୁ ପ୍ରଥମେ ବହଳ ନଡ଼ିଆ କତା ପାପୋଛ ବିଛା ଦୁଇଟି ପାହାଚ । ତାପରେ ତିନୋଟି ମଖମଲ ଢ଼ଙ୍କା ପାହାଚ । ପାହାଚ ଡେ଼ଇଁଲେ, ଚଉଡ଼ା ମାର୍ବଲ ବାରଣ୍ଡା । ସାମନାରେ ଯାଉଁଳି କାଠ କବାଟ । କବାଟ ଖୋଲିଲା । ଭିତରଟା ଶୀତତାପ ନିୟନ୍ତ୍ରିତ । ଭିତରୁ କୋଉଠୁ କେତେ ଜଣ ଲୋକଙ୍କ ଅନୁଚ୍ଚ ବାର୍ତ୍ତାଳାପର ଗୁଞ୍ଜରଣ ଶୁଭିଲା । ଆଉ ଦିଇଟା ବଡ଼ ଆୟତାକାର ରୁମ ଓ ଦୁଇଟା ଦରଜା ପାରେଇଲାପରେ ଗୋଟେ ବଡ଼ ହଲ । ମଝିରେ ଦିହାତ ଉଚ୍ଚ ଗୋଟେ ଚଉଖୁଣ୍ଟିଆ ଦିଥାକିଆ ମଣ୍ଡପ । ଜାଣିଲି, ଭରତ ନାଟ୍ୟଶାସ୍ତ୍ରର ମତ୍ତବାରଣୀ ମଞ୍ଚପରି ଏକ ମଂଚ । ସବାଓପର ମଞ୍ଚର କେନ୍ଦ୍ରରେ ନାଟକର ନାୟକ ବାବା, ଦ୍ୱିତୀୟ ଥାକରେ ଅନ୍ତରଙ୍ଗ ପାର୍ଷଦ ଓ ତୃତୀୟ ଥାକରେ, ମାନେ ତଳ ଚଟାଣରେ ସାଧାରଣ ମୁମୁକ୍ଷୁ । ମଝିଥାକରେ ତିନି ଚାରିଜଣ ବସିଥିଲେ । ମନ୍ତ୍ରୀ ପହଂଚନ୍ତେ ସେମାନେ ଉଠି ସ୍ୱାଗତ କଲେ । ମଂଚକୁ ଉଠିବା ପାଇଁ ପଛପଟୁ ଧାଉଡ଼ିଏ ପାହାଚ-ଦିପଟେ କାଠ ବାଡ଼ା । ମନ୍ତ୍ରୀ ଓ ତାଙ୍କ ଆପଣାଲୋକେ ଉଠିଗଲେ । ମୁଁ ବି ଯାଉଥିଲି । ମନ୍ତ୍ରୀ କହିଲେ, 'ଆପଣ ଏଇ ପଛପଟ ପ୍ରତୀକ୍ଷାଳୟରେ ବସନ୍ତୁ । ସେଇଠି କଲେଜର ସେକ୍ରେଟେରି ଓ ପ୍ରିନ୍ସିପାଲ ଆପଣଙ୍କୁ ସବୁ କାଗଜପତ୍ର ଦେଖେଇବେ । ରିପୋଟ୍‌ଟା ଏଇଠି ଲେଖିଦେବେ । ଏଇଠି କମ୍ପ୍ୟୁଟରରେ ପ୍ରିଣ୍ଟ କରେଇ ଦେବା । ଆପଣ ଦସ୍ତଖତକରି ମତେ କପିଟେ ଦେଇଦେବେ । ତାପରେ ଯେତେକପି କଢ଼େଇବାର କଢ଼େଇ ପ୍ରପର ଚାନେଲରେ ପଠଉଥିବେ !'

ଶ୍ରୀମତୀ ଶରଣ ଟିକିଏ ଅସୁଖୀହେଲେ । ତଥାପି ମନ୍ତ୍ରୀଙ୍କ ହୁକୁମ । ପାଖର ଗୋଟେ ରୁମ୍‌ରେ ବସିଲୁ । ସେଠି ସଫାରିସୁଟ୍ ଓ ବହଳ ନିଶ ସାଙ୍ଗକୁ ଗୋଜିଆ ଫ୍ରେଞ୍ଚକଟ୍ ଦାଢ଼ିବାଲା ଟୋକାଟିଏ ବସିଥିଲା । ଆମକୁ କୌଣସି ଭଦ୍ରତା ଦେଖେଇଲା ନାହିଁ । ନା ସ୍ୱାଗତ, ନା ନମସ୍କାର ନା ବସନ୍ତୁ ! ଶରଣ ପୂରା ବିଗଳିତା । ସେକ୍ରେଟେରିବୋଲି ମତେ ପରିଚୟ କରେଇଦେଇ ସେ ସେକ୍ରେଟେରିଙ୍କ ଗାଲରେ ସରୁଚୁମାଟିଏ ଦେଲେ । ପାଇଲେ ମଧ । ମୁଁ ବାବୁଙ୍କ ସାମ୍ନା ସୋଫାରେ ବସି ସାରିଥାଏ । ଶରଣ ମୋ ପାଖରେ ବସିଲେ, ପ୍ରାୟ ଅଙ୍ଗାଙ୍ଗୀ ଭାବରେ । ମୁଁ ଟିକିଏ ଘୁଂଚିବାକୁ ଯାଉଚି, ସେକ୍ରେଟେରି ଇଂରାଜୀରେ କହିଲେ, 'ଭଦ୍ରଲୋକ ଦେଖ, ମୁଁ ପାଞ୍ଚମିନିଟ ହେଲା ଅପେକ୍ଷା କରୁଚି । ଆମ ଭାରତରେ ସମୟ ଜ୍ଞାନ ଆଦୌ ନାହିଁ ।' କହିଲି, 'ଆପଣଙ୍କରତ ଅଛି ! ଆପଣ ଭାରତୀୟ ହୋଇଥିବାରୁ କୋଉକୋଉ ଭାରତୀୟଙ୍କର ନାହିଁ କହିଥିଲେ ଠିକ୍ ହୋଇଥାନ୍ତା । ତାଛଡ଼ା ମୁଁତ ସାକ୍ଷାତ ପ୍ରାର୍ଥୀନୁହେଁ । ସରକାରୀ ହୁକୁମରେ ଆସିଚି ମାତ୍ର ।

'ଦେଖ ଶ୍ରୀ .......'

'ମହାଖୁଡ଼ ।'

'ହଁ ଦେଖ ମହାଖୁଡ଼୍ । ସମୟ ହଉଚି ଧନ । ମୋ ପାଖରେ ଆଉ ମାତ୍ର ପାଞ୍ଚମିନିଟ୍ । ମୁଁ ହଙ୍କଙ୍ଗ୍ ବାହାରିଚି । କାମ ଆରମ୍ଭ କର ।'

'ଆପଣ ସରକାରଙ୍କୁ ଦେଇଥିବା ନିବେଦନର କପି ଦିଅନ୍ତୁ ।'

'ଶରଣ, ଏଇଟା କ'ଣ ।'

'ଗୋଟେ ବ୍ୟୁରୋକ୍ରାଟିକ ଫର୍ମ ।'

'ଓଃ, ଏ ଗଧ ବ୍ୟୁରୋକ୍ରାସି । ଆମେ ଚାହୁଁଚୁ । ମହାତ୍ମା ବାବା ଚାହୁଁଚନ୍ତି । ମୁଁ ତମ ମନ୍ତ୍ରୀଙ୍କି ଚିଠି ଲେଖିଚି, ସେଥିରେ ସବୁ ଅଛି ।'

'ସେ ଚିଠିର କପି ଦିଅନ୍ତୁ ।'

'କ'ଣ ହବ ? ମୋ ମୁହଁରେ ସବୁ ଅଛି । ପଚାର ।'

'ଆପଣଙ୍କ ସଂସ୍ଥାର ପଞ୍ଜିକରଣ ହେଇଚି ?'

'ଶରଣ ?'

'ଆଉଗୋଟେ ବ୍ୟୁରୋକ୍ରାଟିକ ପେଞ୍ଚ ।'

'ମାଫ୍ କରିବେ, ଏ ଦେଶର ଆଇନ୍ ଆଖିରେ ଜଣେ ବୋଲି ଗଣାହେବା ପାଇଁ ଅନୁଷ୍ଠାନଟିର ପଞ୍ଜିକରଣ ଦରକାର ।'

'ଓଃ, ଆଇନ୍, ମୋ ଗୋଡ଼ (ମାନେ, ମାର୍ ଗୋଇଠା ସେ ଆଇନକୁ) ।'

'କ'ଣ ହେଲା ?'

'କ'ଣ ।'

'ତମ ଗୋଡ଼ ।'

'ତମେ ହାସ୍ୟକରୁଚ ! କୋଉଠୁ ଏ ସାହସ ପାଇଲ ?'

'ଏ ମାଟିରୁ ଏ ଦେଶର ସମ୍ବିଧାନରୁ । କଲେଜର ଜମି କେତେ ?'

'କଲିଜର ଜମି ? କଲିଜ୍ ତ ଆଶ୍ରମର ଅଂଶ । ଆମର ଯଥେଷ୍ଟରୁ ଅଧିକ ଅଛି ।'

'ସେ ଖବର ମୋର ଦରକାର ନୁହେଁ । କଲେଜ ପାଇଁ ଅଢ଼େଇ ଏକର ଜମି କଲେଜ ଅଧିକାରରେ ରହିବ । କଲେଜ ନାଁରେ ଦଲିଲ୍ ରେଜିଷ୍ଟ୍ରି ହବ ଓ ଆଶ୍ରମରୁ କଲେଜକୁ ହସ୍ତାନ୍ତରିତ ହେବ ।'

'ସାର୍, ଏଇଟା ଗୋଟେ ଫର୍ମାଲିଟି ।'

'ଏ ଫର୍ମାଲିଟିରେ ମୋର ଆସ୍ଥାନାହିଁ ।'

'ଶୁଣନ୍ତୁ । ଆପଣଙ୍କ ଆସ୍ଥା କଥା ପଡ଼ିନାହିଁ । ସରକାରୀସ୍ତରର ଆବଶ୍ୟକତା କଥା ପଡ଼ିଚି ।'

'ଶରଣ, ଏ ଗୋଟେ ଅସମ୍ଭବ ଲୋକ, ହୁଏତ ମୁଣ୍ଡରେ କିଛି ନାହିଁ, ନହେଲେ କାନରେ କିଛି

ପଶୁନାହିଁ ...।'

'ଶୁଣ ସେକ୍ରେଟେରି ବାବୁ, ଅଭଦ୍ରତାର ସୀମା ଅଛି । ତମେ ଆଉ ତମ ଅଧକ୍ଷା ଆଗରୁ ଆପୟେଣ୍ଟମେଣ୍ଟ ନେଇ କରି, ସବୁ ଦଲିଲ ବସ୍ତାବିଙ୍କ ଧରି ମତେ ମୋ  ଅଫିସରେ ଭେଟିବ,' କହି ଉଠିପଡ଼ିଲି ।

ଟେବୁଲ ଉପରେ ଗୋଟେ ଟିକିବତୀ ଦିଥର ଦପ୍‌ଦପ୍ ହେଲା । ଟୋକାଟା ବିରୁଡ଼ିମାଇଲାପରି ଚଉକିରୁ ଦିହାତ ଉପରକୁ ଡ଼େଇଁ ପଡ଼ିଲା । ଦ୍ୱାର ଠେଲି, ଗୋଟେ ଜୋବାପିନ୍ଧା ଲୋକ ପଶି ଆସି ମତେ କହିଲା, 'ଆଜ୍ଞା, ବାବା ଡ଼ାକୁଚନ୍ତି ।'  ମୁଁ ବାହାରନ୍ତେ ସେ ଆଉଗୋଟେ ରୁମ୍‌କୁ ବାଟ କଢ଼େଇନେଲା ।  ଠେକା ଭିଡ଼ି, ବାଘଚମଡ଼ା କସା ତକ୍ତପୋସ ଓପରେ ପଦ୍ମାସନରେ ଜଣେ ବସିଥିଲେ । ତାଙ୍କ ମୁହଁଟା ସେଇ ପତିତପାବନ ମୂର୍ତ୍ତିର ମୁହଁଭଳି ଦେଖାଯାଉଥିଲା ।

'ଆସ ନାଟୁବାବୁ । ନମସ୍କାର ।'

'ନମସ୍କାର ଆଜ୍ଞା ।'

'ବସ । ମୋ ସେକ୍ରେଟେରି ସୁପରକମ୍ପ୍ୟୁଟରର ଇଂଜିନିୟର । ଭାରି ଯୋଗ୍ୟ । ହେଲେ,  ଜନ୍ମରୁ ବାହାରେ କଟେଇଚି । ଆମ ଦେଶ କଥା ଜାଣେ ନାହିଁ ।  ମୁଁ ମନ୍ତ୍ରୀମହୋଦୟଙ୍କ ସାଙ୍ଗରେ କଥାହେଇଚି । ଅଧକ୍ଷା ମୋ ତରଫରୁ ସବୁ କାଗଜପତ୍ର ଧରି ଆପଣଙ୍କୁ ଆଜିରବାରେ ସାତଦିନେ ଭେଟିବେ -  ଆପଣ ଦିନେ ଦିଦିନରେ ରିପୋଟ୍ ପଠେଇଦେବେ । ହଉ, ନମସ୍କାର ।'

'ନମସ୍କାର'

ସେ ଜୋବାବାଲା ମତେ ବାହାରକୁ ନେଇଯାଇ କହିଲା, 'ମନ୍ତ୍ରୀ ଏଇନା ଯିବେ ନାହିଁ । ତାଙ୍କ କଥା ଆମେ ବୁଝିବୁ । ସେ ଆପଣଙ୍କୁ ଯିବାକୁ କହିଚନ୍ତି ।'

ମୁଣିରୁ ଜୋତା, ବେଲ୍ଟ ପର୍ସ ଉଦ୍ଧାର କରି ଗାଡ଼ିରେ ଅଫିସ ଫେରିଲି । ବଡ଼ ଆଚମ୍ବିତ ଲାଗୁଥାଏ । ପୁଣି ସେଇପ୍ରଶ୍ନ - ଇଏ ବି ଭାରତ ? ତା ସାଙ୍ଗକୁ ଆଉ ଗୁଡ଼ିଏ ନୂଆ ପ୍ରଶ୍ନ - ଏ ବାବାଟି ବାସ୍ତବରେ କିଏ ? କୋଉଠାର ଲୋକ ଇଏ ? କି କି ପାଞ୍ଚଟା ବିଷୟରେ ଏମ୍.ଏ. କରିଚନ୍ତି ? ଲୋକଟାର ମୁହଁ ଓ କଣ୍ଠସ୍ୱର ଚିହ୍ନା ଚିହ୍ନା ଲାଗୁଥାଏ । ମାତ୍ର କୌଣସି ସିଦ୍ଧାନ୍ତରେ ପହଞ୍ଚିବା ପୂର୍ବରୁ କାହା ସାଙ୍ଗରେ ଟିକେ କଥାହେଇ ସବୁ ବିଷୟ ବୁଝିବା ଦରକାର ବୋଲି ବିଚାରିଲି ।

ଅଫିସରେ ପହଂଚି ଚା'କପେ ମଗେଇ ପିଉଚି, ଫୋନ୍ ଆସିଲା ।

'ମହାଖୁଡ଼ ବାବୁ !'

'ଆଜ୍ଞା ।'

'ମୁଁ ସଚିବ । ସେ ପଶୁପତିନାଥ ରିପୋଟ୍ କାଇଁ ।'

'ପଠଉଚି ।'

'ହଁ, ବିଶେଷ ଦୂତ ହାତରେ, ସିଧା ମୋ ପାଖକୁ ।'

ରିପୋର୍ଟ୍ ଲେଖିଲି :

'ସଚିବ ମହୋଦୟ, ପଶୁପତିନାଥ ବିଷୟରେ ନିମ୍ନଲିଖିତ ବିଷୟ ଗୁଡ଼ିକ ଅବଧାନକୁ ଆସୁ ।

(୧) ଆମ ପାଖରେ କୌଣସି ବିଧିବଦ୍ଧ ଦରଖାସ୍ତ ପହଂଚିନାହିଁ ।

(୨) ମନ୍ତ୍ରୀଙ୍କ ନିର୍ଦ୍ଦେଶରେ ଆଜି ଅକୁସ୍ଥଳକୁ ଯାଇଥିଲି । ସେଠା ସେକ୍ରେଟେରି, ଅଧ୍ୟକ୍ଷ ଓ ଶେଷରେ ମାନ୍ୟବର ପୃଷ୍ଠପୋଷକଙ୍କୁ ଭେଟିଲି । କେହି କୌଣସି ଦରଖାସ୍ତ ଦେଇନାହାନ୍ତି ।

(୩) ପୃଷ୍ଠପୋଷକ କହିଚନ୍ତି ଯେ ଆଜିଠାରୁ ସାତଦିନେ ସବୁ ଦଲିଲ ଦସ୍ତାବିଜ ଧରି ଅଧ୍ୟକ୍ଷ ମତେ ଭେଟିବେ ।

(୪) ମୁଁ ଅପେକ୍ଷା କରୁଚି ।

ଆମର ମେସେଞ୍ଜର ବା ଦୂତ ନାହାନ୍ତି, ପିଅନ ନହେଲେ ବାବୁ । ଜଣେ ବାବୁଙ୍କୁ ଡ଼ାକି ଜଉମୁଦ ଦିଆ ଲଫାପା ବଢ଼େଇଦେଲି ।

ତାପରେ ଅନ୍ୟକାମରେ ଲାଗିଲି । ରାତି ନଅଟାବେଳେ ଫୋନ୍ ବାଜିଲା । ମୋ ସ୍ତ୍ରୀ କହିଲେ, 'ହଇହୋ ଧୋବଣୀ ବୋଲି କିଏଜଣେ ତମକୁ ଖୋଜୁଥିଲେ । ତମେ ଅଫିସରେ ଅଛ ବୋଲି କହିଦେଇଚି । କିନ୍ତୁ ତମ ନମ୍ବର ଦେଇନି । କେତେବେଳେ ଆସୁଚ ?'

'ହେଇ ବାହାରିଲି ।'

ତଥାପି ଅଧଘଣ୍ଟାଏ ଲାଗିଲା । ଘରେ ପହଂଚିଲା ବେଳକୁ ଦଶଟା । ସ୍ତ୍ରୀ କହିଲେ, 'ଏଇ ପାଞ୍ଚମିନିଟ୍ ତଳେ ପୁଣି ସିଏ ଫୋନ୍ କରିଥିଲେ । ଭାରି ବ୍ୟସ୍ତ ଜଣାପଡୁଥିଲେ । କହିଲେ ତମସାଙ୍ଗରେ ରାତିରେ କଥାହବା ଜରୁରି ।'

'ତା ଫୋନ୍ ନମ୍ବର ଦେଇଚି ?'

'ମାଗିଥିଲି । କହିଲେ ସେ ବାହାରୁ କୋଉଠୁ କରୁଚନ୍ତି । ପୁଣି ଅଧଘଣ୍ଟାକରେ ଫୋନ୍ କରିବେ ।'

ଧୁଆଧୋଇ ହେଇ ସାରିଚି, ଫୋନ୍ ଆସିଲା ।

'କିଏ, ନାଟୁ ?'

'ହଁ, କ'ଣ ଏମିତି ଜରୁରୀ କାମ ପଡ଼ିଲା ?'

'ଦେଖ୍, ସେ ଟୋକୀ ତତେ କାଲି ତା ଘରକୁ ଡ଼ିନର ପାଇଁ ଡ଼ାକିବ । ତୁ ଯିବୁନେଇଁ ।'

'କ'ଣ ହେଲା ? ଖାଇଦବ ?'

'ହଁ, ଅଝୁଆଁ ଟା'କୁକିନା ଗିଳିଦବ ।'

'ତୁ ଡ଼ାକୁନଉଁ । ବାହାନା ମିଳିଯାନ୍ତା । ତତେବି କୋଉ ବିଶ୍ୱାସ ।'

'ଦେଖ୍, ଥଟ୍ଟା ଛାଡ଼ ! ଗମ୍ଭୀର ମାମଲା ଇଏ ?'

'ହେଲାଯେ, କଣ କହିବି ?'

'ଦେହ ଭଲନାହିଁ ।'

'ବାହାରେ, ମିଛିମିଛିକା କାଇଁକି ରୋଗ ଡ଼ାକିବି ? ତାଛଡ଼ା ସେ ତା ପରଦିନକୁ ଡ଼ାକିଲେ ?'

'ସେ ରହୁନାହିଁ । ପାଞ୍ଚଦିନ ବାଦେ ଫେରିବ । ତାପରେ ତାର ଅନ୍ୟ ଏନ୍‌ଗେଜ୍‌ମେଣ୍ଟ ।'

'ଭଲ । ତେବେ କରିବି କ'ଣ ?'

'ଟୁର୍ ।'

'ଟୁର୍ ଏମିତି ହୁଏନା । ଓପର ହାକିମଙ୍କ ଆଦେଶ ଦରକାର ।'

'ଓଃ, ଆଛା ପାଲା । ଠିକ୍ ଅଛି । ତୋ ହାକିମ ତତେ କହିବେ ।'

ସେଇଆ ହେଲା । ସକାଳୁ ଗାଡ଼ିଟିଏ ପହଂଚିଲା । ମୋର ଅଚିହ୍ନା ଡ୍ରାଇଭର ଜଣକ ଚିଠିଟିଏ ବଢ଼େଇଦେଲା । 'ମହାଖୁଡ଼, ଆଜି ଦିନ ଦଶଟା ବେଳେ ବିକ୍ରମପୁର ପଞ୍ଚାୟତର ଗ୍ରାମ୍ୟକ୍ରୀଡ଼ା ପ୍ରତିଯୋଗିତା ଉଦ୍‌ଘାଟନ ଓ ସଂଙ୍ଗରେ ତିରିକଣା ସାକ୍ଷରତା ଅଭିଯାନର ସମାପ୍ତି ପର୍ବରେ ମୁଖ୍ୟ ଅତିଥି ହେବାପାଇଁ ମୁଁ ସମ୍ମତି ଦେଇଥିଲି । ମାତ୍ର ହଠାତ୍ ସାଧାରଣ ସ୍ୱାର୍ଥ ଦୃଷ୍ଟିରୁ ମତେ ମନ୍ତ୍ରୀଙ୍କସହ ଦିଲ୍ଲୀ ଯିବାକୁ ପଡୁଛି । ମୋ ତରଫରୁ ତମେ ଏ କର୍ତ୍ତବ୍ୟ ଦୁଇଟି ସମାପନ କରିବ । ଉଦ୍ୟୋକ୍ତାମାନଙ୍କୁ ଏ ବ୍ୟତିକ୍ରମ ବିଷୟ ବୁଝାଇଦେବ ଓ ସେମାନଙ୍କୁ ମୋ ଶୁଭକାମନା ଜଣାଇଦେବ ।' ଅଧଘଣ୍ଟାକରେ ତିଆରି ହେଇପଡ଼ି ବାହାରିଗଲି ।

ମୋ ପରିଚିତ ରାସ୍ତାରେ ଗଲେ ଆଗ ତିରିକଣା, ତାପରେ ଆଉ ଚାଳିଶ କିଲୋମିଟର ଗଲେ ବିକ୍ରମପୁର । ମାତ୍ର କାର୍ଯ୍ୟକ୍ରମ ଆଗେ ବିକ୍ରମପୁରରେ । ତେଣୁ ଗୋଟେ ବୁଲାଣି ରାସ୍ତାରେ ଯିବାପାଇଁ ଚାଳକଙ୍କୁ ନିର୍ଦ୍ଦେଶ ଦେଲି । ପରିଚିତ ରାସ୍ତା । ତେବେ ଚାରିପାଞ୍ଚବର୍ଷ ହେଲା ଏଆଡ଼େ ଆସିନଥିଲି । ଏଇ ବର୍ଷ କେତେଟାରେ ଚାରିଆଡ଼ ଯେମିତି ବଦଳି ଯାଇଚି ! ସବୁ କେମିତି ଅଚିହ୍ନା ଲାଗୁଚି । କେବଳ ରାସ୍ତା ଦିକରରେ କିଲୋମିଟର ପରେ କିଲୋମିଟର ଧରି ଉଷୁନା ଧାନ ଯାହା ଆଗପରି ଶୁଖୁଛି । ରାସ୍ତାଠାରୁ ବାଁ ଡ଼ାହାଣ ଦିପଟରେ କୋଡ଼ିଏ ପଚିଶହାତ ଛାଡ଼ି ଲମ୍ୱାଚଉଡ଼ା ବଡ଼ ବଡ଼ ମାଟିଗୋଡ଼ି ବନ୍ଧଘେରା ପଥର କଟା ଖନ୍ଦକ । ଗଛବୁଦା ନାହିଁ । ପଥର କାଟିସାରି ଗୋଡ଼ିମାଟି ଗୁଡ଼ା ହୁଡ଼ା ହୁଡ଼ା କରି ନରଖି ଖେଳେଇ ଦେଇଥିଲେ ପୃଥିବୀର ଏ ଅରାଟା ଜହ୍ନ ପିଠିପରି ଖଣ୍ଡିଆ ଖାବରା ନ ଦିଶି ସମାନ ସମାନ ଲାଗୁଥାଆନ୍ତା । ଓପରେ କିଛି ବବୁଲ କି ଖଇର ମଞ୍ଜି ଫୋପାଡ଼ି ଦେଇଥିଲେ ଗଛଗୁରା ଗୋରୁ ଛେଳିଙ୍କ ପେଟକୁ ନଯାଇ ମୁଣ୍ଡଟେକି ଯାଆନ୍ତେଣି । ଅଂଚଳଟା ଏମିତି ଖାଁ ଖାଁ ଦିଶୁନଥାନ୍ତା । ମାଟି ଧୋଇରୁ ରକ୍ଷା ମିଳିଥାଆନ୍ତା । ଚାଷଜମି, ପାଖ ନାଳ, ଜୋର ଓ ଦୂରର ନଇଧାର ଏମିତି ମୃତ୍ତିକାକ୍ଷୟ ଦାଉରେ ପୋତି ହୁଅନ୍ତାନି । ଗୋଟେ ଗୋଟେ ଖନ୍ଦକରୁ ଠିକାଦାର ଓ ଟ୍ରକ୍ ବାଲାଙ୍କ ଆୟ ହାରାହାରି ଲକ୍ଷେଟଙ୍କାରୁ କମ୍ ହଉନଥିବ । ସରକାର ଅବଶ୍ୟ ଉଚିତ ଟିକସ ପାଉନଥିବେ, ମାନେ

ଦଶଏକର ପାଇଁ ପାଉଥିଲେ, ହଜାରେ ଏକର ଖୋଳା ହଉଥିବ । ଏ ଲାଭରୁ ଗାଁ ଗାଁ କ୍ଲବଘର, କାଳୀପୂଜା, ବିଶ୍ୱଶାନ୍ତି ମହାଯଜ୍ଞ ପାଇଁ ଚାନ୍ଦା, ପୁଲିସ ଓ ତଳିଆ ହାକିମଙ୍କ ମାସକାବାରି ବଟି, ବଡ଼ ହାକିମ ଓ ନେତାମାନଙ୍କୁ ଭେଟି, ଦଳମାନଙ୍କ ଚାନ୍ଦା ଓଗେରରେ କିଛି ଅଂଶ ଯାଉଥିବ । ତଥାପି ଯାହା ବଳୁଥିବ ସେଥିରୁ ସାମାନ୍ୟ କିଛି ଖର୍ଚ୍ଚ କରୁଥିଲେ ହଉଥାଆନ୍ତା । କିନ୍ତୁ ବିଶ୍ୱ ପରିବେଶ ସୁରକ୍ଷାପାଇଁ ସହରରେ ସିନା ସଭା, ପ୍ରଚାର, ଖବର କାଗଜ ଲେଖା ଚାଲୁଚି, ଏସବୁ ଦେଖୁଚି କିଏ, କରୁଚି କିଏ ?

ଏଇ ନାରଖାର ଶ୍ରୀହୀନ ଦୁନିଆରେ ଠାଏ ପଳାଶଗଛ ପୁଞ୍ଜିଏ ଦେଖାଗଲା । ଫୁଲ ଫୁଟି ଆସୁଚି । ଜୟ ମା ପଳାଶୁଣୀ ! ଗାଡ଼ି ଧୀର କରିବାକୁ କହିଲି । ଖଣ୍ଡେ ଖତରା ଟିଣ ଉପରେ ଆଲକାତରାରେ ଲେଖା, 'ମା ପଲାସବନ ବାଶିନି ମନ୍ଦିର ନିର୍ମାଣ ପାଇଁ ଦାନକରନ୍ତୁ ।' ଦିଖଣ୍ଡ ବାଉଁଶ ଖୁଣ୍ଟ ବଙ୍କେଇ ଯାଇଚି । ଗୋଟେ ଦିଇଟା କିରାସିନି କଣ୍ଟାପିଟା ଟିଣଖଣ୍ଡ କର ପଟିଆ ସୂର୍ଯ୍ୟ ନମସ୍କାର ଠାଣିରେ ଝୁଲୁଚି । ପଣ୍ଡିତମାନଙ୍କ ଭାଷାରେ' ସଂସ୍କୃତ-କରଣ' ଚାଲିଚି । ଧର୍ମଧ୍ୱଜୀମାନଙ୍କ ଭାଷାରେ ଧର୍ମର ସୁରକ୍ଷା ପାଇଁ ସଚେତନତା ବ୍ୟାପୁଛି । ଅର୍ଥନୀତି ବେତ୍ତା ଓ ସମାଜ ବିଜ୍ଞାନୀଙ୍କ କଥାରେ ଆତ୍ମନିୟୋଜନ ତଥା 'ଘାସ - ଚେରିଆ' ସ୍ଥାନୀୟ ଉଦ୍ୟମର ବାତାବରଣ ବିସ୍ତାରିତ ହେବାରେ ଲାଗିଚି । ସବୁ ହେଉଛି, ମାତ୍ର ଓଡ଼ିଆ ଭାଷା ରସାତଳକୁ ଯାଉଛି । ସ୍ଥାନୀୟ ସଂସ୍କୃତି ଲୋପ ପାଉଛି ।

ଖଣ୍ଡକବାଦେ ବଜାରଟିଏ । ସବୁ ଦୋକାନ ଆଗରେ ଲାଉଡ଼ସ୍ପିକର । କ୍ୟାସେଟ ବାଜୁଚି । ହିନ୍ଦୀ ଓଡ଼ିଆ ଗୀତ, ନାଟକ, ଫିଲ୍ମର ଶବ୍ଦସଂବାହୀ କ୍ୟାସେଟ୍ । ପ୍ରତି ଡ଼ାକବାଜି ଯନ୍ତ୍ର ସର୍ବୋଚ୍ଚ କ୍ଷମତାରେ ଗର୍ଜନ କରୁଚନ୍ତି, 'ଆଲୋ'ହେ ନାଲି ନାଲି ନାଲି,' 'ଏମିତି ପୁଅ ମୁଁ ବାହା ହୁଅନ୍ତି,' 'ଆରେ ହାମ୍ ତୋ ପ୍ୟାର କିଆ, କୋଇ ଗୁନ୍‌ହା ନେହିଁ,' 'ମତେ କରିଦେ, କରିଦେ କରିଦେ,' 'କ୍ୟା ସୋଚତେ ହୋ ତୁମ୍, ଗଦ୍ଦର ନେହିଁ ଆୟେଗା ?' -ଏମିତିଆ କଥାସବୁ କାନ ଫଟେଇଦେଲେ । ରାସ୍ତାକଡ଼ରେ ସେମେଟା ବାଇଗଣ, ପଚା ଆଳୁ, ହଳଦିଆ ଭେଣ୍ଡି, କଳାମୁଣ୍ଡିଆ ଫୁଲକୋବି ଓ ପୋକକଟା ପୋକମରା ବିଷ ଛିଞ୍ଚାରେ ପାଉଁଶିଆ ବନ୍ଧାକୋବି, ସାରୁ, ମାଟିଆଳୁ, ଆନ୍ଧ୍ର କଦଳୀ, ଆନ୍ଧ୍ର ଅଣ୍ଡା, ପାରାଦୀପ କି ବାଲୁଗାଁର ମରୁଆ, ପାତୁଆ, ଚୁଙ୍ଗୁଡ଼ି, ଖଇଙ୍ଗା ଶୁଖୁଆ, ଲୋକାଲ ପୋଇବିଡ଼ା, କାଳିଆ ସେମେଟା ଗୋଶିଙ୍ଗା କଦଳୀ, ଜରିପ୍ୟାକେଟରେ ସୋରିଷ, ଜିରା, ହଳଦୀ ଗୁଣ୍ଡା, ଲଙ୍କା ଗୁଣ୍ଡା, ଆମ୍ବ ଆଚାର, ଇତ୍ୟାଦିର ପସରା ମେଲେଇ ବିକାଳି ବସିଯାଇଚନ୍ତି । ଚା' ଦୋକାନରୁ ନଗଦଧରା କୋଇଲାଚୁଲିରୁ ଧୂଆଁ ଉଠୁଚି । ମନୋହାରୀ ଦୋକାନରେ ଟଫି, ବିସ୍କିଟ ଓ ଚକୋଲଟ, ପ୍ୟାକେଟରୁ ନହେଲେ ମସିଆ କାଚ ଜାରରୁ ଉଙ୍କି ମାରୁଚନ୍ତି । ପାନ ସିଗ୍ରେଟ ଦୋକାନରେ ପାନ ସଜଡ଼ା, ସିଗ୍ରେଟ ବଢ଼ା ଚାଲିଚି । ବେଶ୍ ଗହଳି ବଜାର । ରାସ୍ତାକୁ ଛାଡ଼ି ଗଡ଼ାଣି ଅଞ୍ଚଳରେ 'ମା କାଳୀ ହୋଟେଲ,' 'ନୀଳାଞ୍ଚଳ ସାଲୁନ,' 'ବନା କରଙ୍କ ଅସଲି ସାଲେପୁରୀ ମିଷ୍ଟାନ୍ନ ଭଣ୍ଡାର' 'ପଞ୍ଜାବୀ ଢ଼ାବା,'

'ମଞ୍ଜୁଶ୍ରୀ ଖାଣ୍ଟି ଦକ୍ଷିଣୀ ଢଳଖିଆ,' 'କାଳୁଭାଇନା ବରା' ଓଗେର ନାନା ଦୋକାନ । ଗୋଟେ ଗୋଟେଠି 'ମିଲସ୍ ରେଡ଼ି' ଲେଖା କଳାପଟା । ରାସ୍ତା ଦିପଟେ ଧାଡ଼ି ଧାଡ଼ି ଟ୍ରକ୍ । ବିଲମଝିରେ ଅଧାତିଆରି ଗ୍ରାମ୍ୟ ସିନେମାଘର 'ସପନା' କଡ଼କୁ ଲାଗି ଲମ୍ବାଚାଳଘର । 'ଭିଡ଼ିଓ ପାର୍‌ଲାର' - ଆଜିର ପେସାଲ 'ରାତକି ରାନୀ' ସୋ ୧୦,୧୨,୨,୪,୬ ରାତି ୮,୧୦,୧୨ । ଟିକଟ ମାତ୍ର ପାଞ୍ଚଟଙ୍କା । କୋଉଠି କପେ ଚା ଖାଇବା ପାଇଁ ଭାବୁଥିଲି । ଗହଳି, ଗର୍ଜନ, ଓ ଧୂଳି ଧୂଆଁରେ ମନ ମରିଗଲା । ଜୀବନ ସଂଗ୍ରାମ ଚାଲିଚି । ନାନା ବେଶ, ନାନା ଠାଣି - କିନ୍ତୁ ସଂଗ୍ରାମ ।

ଏଇଠୁ ବାଁକୁ ମୋଡ଼ିବାକୁ ହେବ । ଘାଟଶିଳା ପର୍ବତ ତଳେ ରାସ୍ତା । ଠିକ୍ ମୋଡ଼ ଓପରର ରାସ୍ତାବନ୍ଦ - ଡେଣ୍ଟା ବନ୍ଧାହେଲାପରି ଲମ୍ବାବାଉଁଶର ତଳମୁଣ୍ଡରେ ଗୋଛେ କାଠବିଡ଼ା, ଆଗରେ ଦଉଡ଼ି ଦିକରେ ଦିଇଟା ଅର୍ଗଳି । ଦିଇଟା ବ୍ରଣମୁହାଁ ଟୋକା ଗାଡ଼ି ପାଖକୁ ଆସି, ଦଶଟଙ୍କା ଲେଖା କୁପନ ବଢ଼େଇଦେଲେ 'ଘାଟଶିଳା କଲେଜ ।'

ପଚାରିଲି, 'ତମେତ କଲେଜ କରିବ, ଏଠୁ ସିନା ଚାନ୍ଦାଭେଦା କରିବ, ବାଟୋଇଙ୍କ ଠାରୁ କାହିଁକି ?'

ଉତ୍ତର ମିଳିଲା, 'ରାସ୍ତା ଆମର, ପଂଚାୟତ ହୁକୁମ, ଦେଲେ ଗେଟ୍ ଫିଟିବ ନହେଲେ ଆପଣାବାଟ ଦେଖ ।'

'ବହୁତ ଭଲ । ତମ ସେକ୍ରେଟେରିଙ୍କି ଡ଼ାକ । ତାଙ୍କ ସାଙ୍ଗରେ କଥାହେବି ।'

'ସେ ନାହାନ୍ତି ।'

'ପ୍ରିନ୍ସିପାଲ କି ଆଉ କୋଉ ଷ୍ଟାଫ୍ ।'

'ଆମେ ଯାଇପାରିବୁନାହିଁ, ଏଠି ଡ଼ିଉଟି ।'

'ଦଶଟଙ୍କା ଦେଲି । କୁପନ ଆଣିଲି । ଗେଟ୍ ଫିଟିଲା । ଗାଡ଼ି ଗଡ଼ିଲା ।'

ଏଇ ଗାଁଟା ପାରେଇଲେ ବିକ୍ରମପୁର । ଗାଁ ଦାଣ୍ଡରେ ପାଣି ସୁଅ । କାଳକ ଏମିତି । ପାଖ ଝରଣାର ପାଣି ଯିବାପାଇଁ ଏଇଟାହିଁ ସର୍ବ ସାଧାରଣ ନାଳ ! ଠାଏ ଠାଏ ସାନବଡ଼ ହିଡ଼ ନହେଲେ ରାସ୍ତା କଟାଯାଇ ସରୁ ନାଳିଆ - ଲୋକେ ଆପଣା ଆପଣା ବାରିବିଲକୁ ପାଣି ନେବେ । ଏ ବାଟରେ ଗଲେ ସବୁବେଳେ ଭାବେ - ଏ ଜଳସେଚନ, କୃଷି ବିଭାଗ ବାଲା ବା ରେଭେନ୍ୟୁ ହାକିମ ହୁକୁମା, କେହି କ'ଣ ଏବାଟେ ଯାଉ ନାହାନ୍ତି ? ଏତେ ଯୋଜନା ହଉଚି : ସାନ, ମଝିଲା ବଡ଼ ଜଳସେଚନ ପ୍ରକଳ୍ପ ହଉଚି । ଏଠି ହଉନି କାହିଁକି ? ଥରେ ଅଧେ ହାକିମମାନଙ୍କୁ ଲେଖିଥିଲି । ଉତ୍ତର ପାଇନଥିଲି । ଗୋଟେ ନାଳିଆପାଖରେ ଜଣେ କୋଡ଼ିଧରି ବାଇଗଣ କିଆରିକି ପାଣି ବାଗଉଥିଲା । ତାଙ୍କୁ ପଚାରିଲି ଏକଥା ଯେ ସେ ତାଚ୍ଛଲ୍ୟରେ ହସି ହସି କହିଲେ, 'ହେଇଚି । ଗାଁ ପାରେଇଗଲେ ଦେଖିବେ ।' ଦେଖିଲି । ପ୍ରାୟ ତିନି କିଲୋମିଟର ଲମ୍ବ ମାଟିବନ୍ଧ । ଦିକରରେ ପଥରଛାଆଣି । ବନ୍ଧ ମଝିରେ ଭଙ୍ଗା ଫୁକାର । ବନ୍ଧ ଓପର ପଟେ ଗୋଟିଏ ବିଷମ

ବାହୁ ବିରାଟ ଖାଲ । ଖାଲଟା ପୁରୁଣା ପଥର ଖାଦାନ ପରି ମନେହେଲା । ପୋଖରୀ ତଳିରେ କିଛି ନାଲିଚିଆ କାଦୁଅ । ଚକେ ଚକେ ପାଣି । ବହୁତ ଗେଣ୍ଡା ଶାମୁକା ଖୋଳ । ଗୋଟେ ବଗ, ଦିଇଟା ବଣି । ଖାଲ ପାରେଇଗଲେ ପାହାଡ଼ତଳି ଜମି ଉପରଆଡ଼କୁ ଉଠିଯାଇଚି । ନଣ୍ଡା ପାହାଡ଼ । ବର୍ଷାଦିନେ ଏଇ ପାହାଡ଼ ଆଉ ପାହାଡ଼ତଳି ଅଞ୍ଚଳର ପାଣି କିଛି ଏକାଠି ହଉଥିବ ଏଠି । ବର୍ଷା ସରିବାର ଦଶପନ୍ଦର ଦିନେ ସବୁ ପାଣି ଗୋଡ଼ିଆ ମାଟିରେ ଝରେଇ ଯାଉଥିବ । ଜଳାଶୟ ଶୁଖିଲା ଠାକୁ ଠାକୁ ହେଇ ରହୁଥିବ । ବର୍ଷା ଚାରିମାସରେ ଯାହା ମୀନ କରାଣ୍ଡି ଗେଣ୍ଡା ହେଇଥିବେ - ସେଗୁରାକୁ ଧରିବା ପାଇଁ ଗାଁ ଛୁଆଙ୍କ ଭିଡ଼ ହେଉଥିବ । କାହା କାହାଘରେ ଦିନେ ଓଳିଏ ମାଛ ପୋଡ଼ା କି ହଳଦୀପାଣି ହଉଥିବ । ବାସ୍ ।

ମନେ ପଡ଼ିଗଲା, ଏଇଠି ପାଖରେ ପୁରୁଣା ଦେଉଳଟିଏ ଥିଲା । ବେଶୀ ପୁରୁଣା ନୁହେଁ କପିଳେନ୍ଦ୍ରଙ୍କ ସମୟର । ତା ଆଗରୁ ଆହୁରି ପୁରୁଣା ଦେଉଳଟିଏ ଥିଲା । ଶିବଦେଉଳ । ସେଇଟିର ଜୀର୍ଣ୍ଣ ସଂସ୍କାର କରଉ କରଉ ଏ ନୂଆଦେଉଳଟି ଗଢ଼ିଥିବେ କିଏ । ପୁରୁଣା ଦେଉଳର ନାଚୁଣୀଜାଲିଥିବା ଗବାକ୍ଷ, ଗୋଟେ ଦିଇଟା ଷଡ଼ଭୁଜା ମହିଷମର୍ଦ୍ଦିନୀ ମୂର୍ତ୍ତି ନୂଆ ଦେଉଳବାଡ଼ରେ ଖଞ୍ଜି ଦେଇଥିଲେ । ବେଶୀ ନୁହେଁ, ତଥାପି ପନ୍ଦର ମିଟର ଯାଏ ଉଚ୍ଚ ନବରଥ ରେଖ ଦେଉଳ । ସାମ୍ନାରେ ଦି ପରସ୍ତ ପୀଢ଼ଥାଇ ମୁଖଶାଳା । ଦେଉଳ ପାଖରେ ପଣ୍ଡା, ନାରୁ ପଣ୍ଡାଙ୍କ ଘର । ରାସ୍ତାର ଡ଼ାହାଣକରେ ପୁଳାଏ ଚାଳଘର ପଛରେ ଗୋଟିଏ ଦୋମହଲା ପଥର କୋଠା । ଏଇ କୋଠା ତାହେଲେ ଦେଉଳଟାକୁ ଲୁଚେଇଚି ! ସରୁ ଗାଁ ଗୋହିରୀ ଦେଇ ଆଗେଇ ଗଲି । କୋଠା ଡ଼େଇଁଲାପରେ, ଆଠଦଶଟା ସୁନାରଘାଇ ବାଉଁଶବୁଦାଘେରା ଦେଉଳଟି ଦିଶିଲା । କିନ୍ତୁ ଏକ'ଣ ! ପୂରା ଚୂନସିମେଣ୍ଟ ପଳସ୍ତରା ଲଗାଇ ଦେଉଳର ପୁରୁଣା କାୟାର କାୟା ପାଲଟ ହେଇଯାଇଚି ! ମୁଖଶାଳା ସାମ୍ନାରେ ଗୋଟେ ବଉଳଗଛ ତଳ ସିମେଣ୍ଟ ପିଣ୍ଡି ଉପରେ ଜଣେ ବୁଢ଼ା ବସିଥିଲେ ।

ଗେରୁଆ ଆଣ୍ଠୁଲୁଚା ଖଦଡ଼ ଧୋତି ସାଙ୍ଗକୁ କାନ୍ଧରେ ଧଳା ନେଳି ଧଡ଼ିଆ ଗାମୁଛା । ଝୋଟପରି ଧଳା ମୁଣ୍ଡବାଳ । ଗାଲରେ ଧଳା ରୁଢ଼ । ପତଳା ଖଡ଼ିକାପରି ଦେହ । ଚକାପକେଇ ସିଧା ବସିଥିଲେ । ଦି ଭୂରୁ ମଝିରେ ବଡ଼ ଭାତୁଡ଼ିଟା ଓହଳି ପଡ଼ିଥିଲା । 'ଜୁହାର' କହି, ମୁଣ୍ଡ ନୁଆଁଇଲି । 'ଜୁହାର, ଜୁହାର, ଜୁହାର । କିଏ ବାବୁ ଚିହ୍ନି ପାରୁନାହିଁ, ଗୋଟେ ଆଖି ଯାଇଚି ଗାଁରେ ପରଳ କଢ଼େଇ । ଆରଟା ପରଳ ମାଡ଼ି ଯିବ ଯିବ ହଉଥିଲା । ଏବେ ଶିବାମ୍ବୁ ବୁନ୍ଦାଏ ବୁନ୍ଦାଏ ପକେଇ ଟିକିଏ ଦେଖି ହଉଚି - ହେଲେ ବି, ଜାଲୁଜାଲୁଆ । କଣ୍ଠରୁ ବି ବାରି ପାରୁନାହିଁ କିଏ ଆପଣ । ତେବେ ଏ ଗାଁର ନୁହନ୍ତି । କୋଉଠୁ ଆସିଲେ ? କୁଆଡ଼େ ଯିବେ ? 'ତାଙ୍କୁ ଜଣେଇଲି, । 'ଜଣେ ବିଦେଶୀ । ବିକ୍ରମପୁର ଯାଉଥିଲି, ଟିକିଏ ପାଣିପିଇବି ବୋଲି କୋଠାଘର ଆଡ଼େ ମୁହେଁଇଥିଲି ଯେ ସଦର'ଦରଜା ବନ୍ଦ । ଦେଉଳ ସାମ୍ନାରେ ଆପଣଙ୍କୁ ବସିଥିବାର ଦେଖି ଆସିଲି ।' 'ଜଳ ଟିକିଏ ପିଇବେତ !' ଘରେତ ସମସ୍ତେ ଥିବାକଥା, ତେବେ ବୋହୂଟିଏ ଥିବେ ।

ବଡ଼ ପୁଅ ବିଲକୁ ଯାଇଥିବ । ସାନଟ କ'ଣ ମିଟିଂହବ ବୋଲି ତିରିକଣା ଯାଇଚି ସକାଳୁ । ନାତି କଲେଜ ଯିବଣି । ହଉ । ମୁଁ ଦେଖୁଚି' କହି, ବୁଢ଼ା ଓହ୍ଲେଇପଡ଼ି କୋଠାଆଡ଼େ ଚାଲିଲେ । ଗଲାବେଳେ ପଚାରିଦେଲେ- ତାଙ୍କ ସାଙ୍ଗରେ ଘରକୁ ଯିବି ନା ସେଇ ବଉଳମୂଳେ ଅପେକ୍ଷା କରିବି, ଆଉ ନିଜେ ଉତ୍ତର ଦେଲେ, 'ନାଇଁ ସେ ଗେଞ୍ଜକୁ କାଇଁକି ଯିବେ । ଏଇଠି ଖୋଲାମେଲାରେ ଛାଇରେ ବସନ୍ତୁ ।' ସଳଖ ଦମ୍ଭିଲା ଧୀର ଚାଲି । ତିନିଚାରି ମିନିଟ୍‌ରେ ଫେରିଲେ । ଦଶ ଏଗାରବର୍ଷର ଝିଅଟିଏ ଗିଲାସ ପାଣିଢ଼ାଳ ଧରି ଆଗେ ଆଗେ ଆସୁଥାଏ । ବୁଢ଼ା ମୋ ଉଦ୍ଦେଶ୍ୟରେ କହିଲେ, 'ବାବୁ, ଏଇଟି ମୋ ଗେହ୍ଲୀ ନାତୁଣୀ । ତା ବାପ କହିଲା - ଚାଲ୍, ଇଂରେଜୀ ସ୍କୁଲରେ ପଢ଼ିବୁ । ଯାଇଥିଲା, ହେଲେ କାନ୍ଦି କାଟି ଉଛନ୍ନ । କ'ଣ ନା ଗାଁରେ ପଢ଼ିବ । ବାପାଠଉଁ ସଂସ୍କୃତ ଶିଖିବ । ଆମଘରେ ଗୋସବାପକୁ ବାପା ଆଉ ବାପକୁ ନନା କୁହନ୍ତି । ପଳେଇ ଆସିଲା । ଏଇନା ଷଷ୍ଠରେ ପଢୁଛି । ବୃତ୍ତି ନିଶ୍ଚେ ପାଇବ ।' ଝିଅଟି ପାଣିଢ଼ାଳ ଗିଲାସ ବଉଳ ଚାନ୍ଦିନୀରେ ଥୋଇଦେଇ ନମସ୍କାର ହେଲା । ତାପରେ ଢ଼ାଳରୁ ପାଣି ଅଜାଡ଼ି ଗିଲାସଟି ଭର୍ତ୍ତିକରି, ଗିଲାସର ବାହାରଟା ହାତନେଡ଼ିରେ ପୋଛିଦେଇ ମତେ ବଢ଼େଇଦେଲା । କହିଲି, 'ଗିଲାସ ପନ୍ଦଯାଏ କେବେ ଭରିବୁ ନାହିଁ । ତାଛଡ଼ା ଫ୍ରକ୍‌ତ ପିନ୍ଧିଚୁ, ଶାଢ଼ି ହେଇଥିଲେ କାନିରେ ପୋଛିଦେଇଥାନ୍ତୁ । ଏଣିକି ତଉଲିଆଟିଏ କାନ୍ଧରେ ପକେଇବୁ ଯେ ହାତ ଓଦା ହବନାହିଁ ।' ଝିଅଟି ନାଚେଇଗଲା ଦେଖି ପଚାରିଲି, 'ବାପାଙ୍କଠାରୁ କ'ଣ ସଂସ୍କୃତ ଶିଖିଲୁଣି ଗାଇଲୁ ଦେଖି ।' ଝିଅଟି ସୁଲଳିତ କଣ୍ଠରେ, କୌଣସି ଜଡ଼ତା ନରଖି ଗାଇଲା -

ଶିବଃ ଶକ୍ତ୍ୟାଯୁକ୍ତୋ ଯଦି ଭବତି ଶକ୍ତଃ ପ୍ରଭବିତୁଂ
ନ ଚେଦେବଂ ଦେବୋ ନ ଖଳୁ କୁଶଳଃ ସ୍ପନ୍ଦିତମପି ।
ଅତସ୍ତ୍ୱାମାରାଧ୍ୟାଂ ହରିହରବିରଞ୍ଚ୍ୟାଦିଭିରିପି
ପ୍ରଣନ୍ତୁଂ ସ୍ତୋତୁଂ ବା କଥମକୃତ ପୁଣ୍ୟଃ ପ୍ରଭବତି ॥

କହିଲି, 'ଚମତ୍କାର । ଅର୍ଥ କ'ଣ ବୁଝିଛୁ କହିଲୁ ।' ଝିଅଟି କହିଲା, 'କେବଳ ଶକ୍ତିଙ୍କ ସହିତ ଯୁକ୍ତ ହେଲେହିଁ ଶିବ କର୍ମକ୍ଷମ ହୁଅନ୍ତି । ସେପରି ନ ହୋଇଥିବା ଯାଏ ଶିବଙ୍କଠାରେ ସାମାନ୍ୟ ସ୍ପନ୍ଦନ ମଧ୍ୟ ନଥାଏ, କର୍ମକୁଶଳତାତ ଦୂରର କଥା । ସେଇଥିପାଇଁ ମା' ତୁମକୁ ହରି, ହର, ବ୍ରହ୍ମା ଆଦି ନିଜ ନିଜର ନିୟୋଜିତ କର୍ତ୍ତବ୍ୟ ଅର୍ଥାତ୍ ସ୍ଥିତି, ଲୟ ଓ ସୃଷ୍ଟି ପାଇଁ ଆରାଧନା କରିଥାନ୍ତି । ଏ ଅବସ୍ଥାରେ ପୁଣ୍ୟ କରିନଥିବା ମୋ ଭଳି ମଣିଷଟିଏ ତମକୁ ବା କି ପ୍ରଣାମ କରିବ ବା ସ୍ତୁତି କରିବ ?'

ବିସ୍ମିତ ହେଲି । ଏତେ ସାନଝିଅଟିଏ, ସେ ପୁଣି ଶଙ୍କାରାଚାର୍ଯ୍ୟଙ୍କ ସୌନ୍ଦର୍ଯ୍ୟ ଲହରୀରୁ ଆବୃତ୍ତି ଆରମ୍ଭ କଲା ! କହିଲି, 'ମା, ଯଥେଷ୍ଟ ହେଲା ତୁ ନିଶ୍ଚୟ ଜାଣୁ ଯେ, ଏ ଶ୍ଳୋକରେ ସମଗ୍ର ଶ୍ରୀବିଦ୍ୟା ଓ ଶ୍ରୀଚକ୍ରର ତତ୍ତ୍ୱ ନିହିତ ଅଛି ।' କ'ଣ ସଂପୂର୍ଣ୍ଣ ସୌନ୍ଦର୍ଯ୍ୟ ଲହରୀ କଣ୍ଠସ୍ଥ

କରିଛୁ ?' ତା ଗୋସବାପ ଉତ୍ତର ଦେଲେ, 'ନାଇଁ ଆଜ୍ଞା, ଶେଷ ବାଷଠିଟି ଶ୍ଳୋକ ମା'ଙ୍କର ରୂପବୈଭବ ବର୍ଣ୍ଣନା । ପ୍ରଥମ ଏକଚାଳିଶଟି ଶ୍ଳୋକ ମାନେ, କେବଳ ଆନନ୍ଦଲହରୀ ଅଂଶଟି ଶିଖେଇଛି । ମା' ଦୟାକଲେ, ପରେ ସବୁ ଶିଖିଯିବ ।'

ପଣ୍ଡା ମହୋଦୟ ମୋ ପରବର୍ତ୍ତୀ ପ୍ରଶ୍ନଟି କଳନା କରିନେଇ କହିବାକୁ ଲାଗିଲେ, 'ଆପଣ ନିଶ୍ଚେ ଜାଣିଥିବେ ଯେ ଆମ ଅଂଚଳ ଏକ ସମୟରେ ଭୌମକର ବଂଶର ଶାସନରେ ଥିଲା । ସେ ବଂଶର ରଜା-ରାଣୀମାନେ ଶୈବ, ଶାକ୍ତ, ବୈଷ୍ଣବ ଓ ବୌଦ୍ଧଧର୍ମର ପୃଷ୍ଠପୋଷକତା କରୁଥିଲେ । ଆମେ ତ ବିରଜା ମଣ୍ଡଳ ବାଲା - ଆମର ସଂସ୍କୃତି ଶାକ୍ତ । ଭୌମବଂଶର ପ୍ରଥମ ନାରୀ ଶାସକ ରାଣୀ ତ୍ରିଭୁବନ ମହାଦେବୀଙ୍କ କଥା ଜାଣନ୍ତି କି ? ସେ ନିଜକୁ ଗୋସ୍ୱାମିନୀ, ସିନ୍ଧ ବା ସିଦ୍ଧ ଗୌରୀ ଓ ପୁଣି କାତ୍ୟାୟନୀ କହିଛନ୍ତି - ମାନେ ଏକାଧାରରେ ବୈଷ୍ଣବ, ଶୈବ ଓ ଶାକ୍ତ ! ଏ ପ୍ରାୟ ନବମଶତାବ୍ଦୀ ମଧ୍ୟଭାଗର କଥା । ସେ ଥିଲେ ରାଜା ଶାନ୍ତିକରଙ୍କର ପତ୍ନୀ । ପ୍ରଥମ ଶାନ୍ତିକରଙ୍କ ମୃତ୍ୟୁପରେ ତାଙ୍କପୁଅ ତୃତୀୟ ଶୁଭାକର ଅଳ୍ପକାଳପାଇଁ ରାଜତ୍ୱକରି ପ୍ରାଣ ହାରିଲେ । ତାଙ୍କର ପୁଅ ନଥିଲେ । ଦେଶକୁ ଅରାଜକତାରୁ ରକ୍ଷାକରିବା ପାଇଁ ତାଙ୍କ ମା ତ୍ରିଭୁବନ ମହାଦେବୀ ନିଜେ ଶାସନ ଭାର ଗ୍ରହଣ କଲେ । ଓଡ଼ିଶା ଇତିହାସରେ ଏହା ଅଭୂତପୂର୍ବ । ତାଙ୍କ ପରେ ଏହି ବଂଶରେ ଆହୁରି ସାତଜଣ ନାରୀ ଶାସନ ଦାୟିତ୍ୱ ନେଇଥିଲେ । ସେ ଯୁଗରେ ଏ ନିହାତି ସାମାନ୍ୟ କଥା ନଥିଲା । ତେବେ ରାଣୀ ତ୍ରିଭୁବନ ମହାଦେବୀଙ୍କ 'କାତ୍ୟାୟନୀ' ନାଁଟିରେ ଏକ ଲୁଚ୍ଚାୟିତ ରହସ୍ୟ ଅଛି । କାତ୍ୟାୟିନୀତ ଦୁର୍ଗାଙ୍କର ନାମ । ମାତ୍ର ଏହାର ଆଉଏକ ଅର୍ଥ ହେଉଛି ରକ୍ତାମ୍ବର ପରିହିତା ମଧ୍ୟବୟସ୍କା ବିଧବା !'

ମୁଁ ପ୍ରଶ୍ନଟିଏ କରିବାକୁ ଉସ୍‌ଖୁସ୍ ହଉଥିବା ବୁଢ଼ାଙ୍କ ଦୃଷ୍ଟି ଏଡ଼ାଇନଥିଲା । ତାଛଡ଼ା ମୁଁ ତାଙ୍କ ଗୈରିକ ବସନ ଆଡ଼େ ସ୍ଥିରଦୃଷ୍ଟିରେ ଚାହିଁଥିଲି ଓ ମୋ ଓଠରେ ସରୁ ସ୍ମିତଟିଏ ଲାଗିଥିଲା ବୋଧହୁଏ । ବୁଢ଼ା କିନ୍ତୁ ମତେ କୁହାଇନଦେଇ ନିଜେଇ ସବୁ ପ୍ରଶ୍ନର ସମାଧାନ ଦେଇଯିବା ପାଇଁ ଦୃଢ଼ ପ୍ରତିଜ୍ଞ ଯେପରି ! କହିଲେ, 'ବ୍ୟସ୍ତ ହୁଅନ୍ତୁ ନାହିଁ । ମୋ ପତ୍ନୀ ଅଛନ୍ତି । ତେଣୁ ମୋର ଗୈରିକ କାତ୍ୟାୟନୀଙ୍କ ରକ୍ତାମ୍ବରର ପୁରୁଷ ପୋଷାକ ନୁହେଁ ! ଆପଣ ରହସ୍ୟ କରିବାକୁ ସବୁବେଳେ ତିଆର, ନୁହେଁ ? ଆପଣ ଯେମିତି ଭାବୁଛନ୍ତି ମୁଁ ମଧ୍ୟ ସେମିତି ଅନେକ ସମୟରେ ଭାବେ - ବିଧବାମାନଙ୍କ ପାଇଁ ଧଳାଶାଢ଼ି କିମିତି ପଶିଲା ଏ ଦେଶକୁ କେଜାଣି ? ଛାଡ଼ନ୍ତୁ ସେକଥା । ଆମ ଅଞ୍ଚଳସାରା ଭୌମମାନଙ୍କର ଅନେକ କୀର୍ତ୍ତି । ଏଇ ଟିକିଏ ଛାଡ଼ି ଯୋଉ ଢୁବୁରିଟି ଦୃଶୁଛି - ତା ତଳେ ଅଧାପୋତା ତିନୋଟି ଷଡ଼ଭୁଜା ମହିଷମର୍ଦ୍ଦିନୀ ମୂର୍ତ୍ତି ଅଛନ୍ତି । ସେମାନଙ୍କ ଠାଣି ଏପରିଯେ, ଆମର ଏବ ଲୋକଙ୍କ ବିଚାରଓ ବିଶ୍ୱାସଯେ ଏ ଦୁର୍ଗା ପ୍ରତିମାମାନଙ୍କୁ କଳାପାହାଡ଼ ଚାପୁଡ଼େ ଚାପୁଡ଼େ ପକେଇଲାଯେ ସେମାନଙ୍କ ଷେଣ୍ଡା ବାଙ୍କିଗଲା । ସେତେବେଳେ ଏମାନେ ଜୀବନ୍ତ ଥିଲେ । ଏବେହେଲେ କଳାପାହାଡ଼ ଆସି ଏ ମୂର୍ଖଙ୍କୁ ଥାପଡ଼େ ଦିଥାପଡ଼ କଷନ୍ତା ! ଛାଡ଼ନ୍ତୁ ଏମାନେତ ମୂର୍ଖ । ଆପଣଙ୍କପରି ପଣ୍ଡିତମାନେ ଆମ ଏ ଦେଉଳଟିକୁ

କ'ଣ ନକଲେ ! ଆମ ବିନୋଦବାବୁ ମନ୍ତ୍ରୀଙ୍କି କୁହାବୋଲାକରି ଆପଣଙ୍କ ପ୍ରତ୍ନତତ୍ତ୍ୱ ବିଭାଗ ହାତରେ ଦେଉଳଟିର ମରାମତି କରେଇଲେ ଯେ ସବୁ ଖଣ୍ଡିଆଖାବରା ଜାଗାରେ ନୂଆପଥର ବସେଇବେ କ'ଣ, ସିମେଣ୍ଟ - ବାଲି ପଲସ୍ତରା ନେସିଦେଇଗଲେ । ତାପରେ ଆମ ବିନୋଦବାବୁଙ୍କ ପୁଅ ଆଉ ତାଙ୍କ ସାଙ୍ଗମାନେ ନଗେଇଲେ ଯେ ପୂରା ଦେଉଳଟାକୁ ଚୂନ ପଲସ୍ତରା ଓ ରଙ୍ଗ କରିବାକୁ ପଡ଼ିବ । ଯୋଡ଼ିଏ କାରଣ - ପ୍ରଥମ, ମୂର୍ତ୍ତିଗୁଡ଼ା ବଡ଼ ଅଶ୍ଳୀଳ । ଦ୍ୱିତୀୟ, ଠାଏ ଠାଏ ପଲସ୍ତରା ନେସାହେଇ ଦେଉଳଟା କୋଢ଼ରୋଗୀପରି ଦିଶୁଛି । ବାସ୍, ଟ୍ରକ୍‌ବାଲା, ଖଣିଖାଦାନ ବାଲା, ଜଙ୍ଗଲ ଠିକାଦାର, ଗଞ୍ଜେଇ - ଅଫିମ ପଟାଦାର, ଭାଟିବାଲାଙ୍କୁ ଖବରଗଲା । ଚାନ୍ଦାଭେଦା ଉଠିଲା । ଦେଉଳ ପଲସ୍ତରା ଓ ରଙ୍ଗ ହେଲା । ବାବୁମାନଙ୍କ ମନସ୍କାମନା ପୂରିଲା । ଭୌମକର ଯୁଗର କାରିଗର ବା କପିଳେନ୍ଦ୍ରଙ୍କ ବେଳର ଶିଳ୍ପୀଙ୍କର ଶିଳ୍ପ ଚାତୁରୀ ମୁମ୍ବାଇ ଫିଲମସେଟ୍‌ରେ ପରିଣତ ହେଇଗଲେ ! ନାତୁଣୀ ଜେଜେଙ୍କ ଅନୁମତି ଚାହିଁଲା ଯିବାପାଇଁ, 'ମା ତେଣେ ଏକା ରାନ୍ଧୁଚି । ତାକୁ ତ ଦୁଶୁନେଇଁ । ରାନ୍ଧୁ ରାନ୍ଧୁ ହାତଗୋଡ଼ରେ ଚେଙ୍କା ଖାଇବ । ମୁଁ ଯାଏଁ ।'

'ଖାଲିତ ପଦେ କହିଥାଆନ୍ତୁ - ଯାଉଚି । ଏତେ କଥା କାଇଁକି ? ଯା ।' ଜେଜେ ନାତୁଣୀ ମୁଣ୍ଡ ଆଉଁଶି ଦେଲେ । ସେ ଗଲା ।

'ଆଜ୍ଞା । ଦେଉଳ ଘେନି ମୁଁ ପାଟି ନ ଫିଟେଇବି ସବୁ ପ୍ରଶ୍ନର ଜବାବ ପାଇଗଲି । କେତେ ନୂଆଖବର ବି ଜାଣିଲି । ମୋର ଗୋଟିଏ ମାତ୍ର ପ୍ରଶ୍ନ ଅଛି - ଦେଉଳ ଘେନି ନୁହେଁ । ଅନ୍ୟ ପ୍ରସଙ୍ଗ । ଠିକ୍ କେମିତି ପଚାରିବି ବୁଝିପାରୁନି ।'

'ସିଧା ପଚାରିଦେବେ ।'

'ହଉ , ଏ ଘାଟଶିଳା କ୍ଷୁଦ୍ରଜଳସେଚନ ପ୍ରକଳ୍ପ' ନାମକ ମହାକାଳଫଳଟି କିଏ ଫଳେଇଲେ ? କେମିତି ଓ କାହିଁକି ?'

ବୁଢ଼ା ହୋ ହୋ ହେଇ ହସିବାକୁ ଲାଗିଲେ, ତୁହାକୁ ତୁହାକୁ ହସ - ମହାକାଳ ଫଳ । ବାଃ, ବାହାରଟିର ମନୋହାରୀ ରଙ୍ଗ, ଭିତରଟି କୋଚଟ କଳା ଅଙ୍ଗାର ! ସବୁଠୁ ମଜା କଥା - ତୀବ୍ର ବିଷ । ବେଶ୍ କହିଲେ ବାବୁ ! ଶୁଣନ୍ତୁ । ସରକାରୀ ଯୋଜନା ଫଳିଲା । ଆମ ଗାଁର ଠିକାଦାର ପଦନତିହାଡ଼ିଏ ନେଇଆଣି ଥୋଇଲେ । ସରକାରଙ୍କୁ ମାନେ ମନ୍ତ୍ରୀଙ୍କି ମଙ୍ଗେଇଲେ ଆମ ବିନୋଦବାବୁ ।'

'ଏ ବିନୋଦ ବାବୁତ ବଡ଼ କରିତ୍‌କର୍ମା ଲୋକଟିଏ ପରି ଜଣାପଡୁଚନ୍ତି । କିଏ ସିଏ ?'

'ଦେଖନ୍ତୁ, ବୁଢ଼ାଲୋକତ - ମୋର ଧାରଣା ବିନୋଦବାବୁଙ୍କୁ ନଜାଣିବା ଲୋକ ଖଣ୍ଡମଣ୍ଡଳରେ ନାହାନ୍ତି ! ସେ ମୋ ଦ୍ୱିତୀୟ ଓ ସାନ ପୁଅ । ଗଛଦଳରେ ନେତା । ଆମ ମଣ୍ଡଳ ସମ୍ପାଦକ । ନାତି ନାତୁଣୀର ବଡ଼ଭାଇ ଓ ସାନଭାଇ ଦିହେଁ ମା ସାଙ୍ଗରେ ଭୁବନେଶ୍ୱରରେ ରହନ୍ତି । ମୋ

ବଡ଼ପୁଅ ଗୋବିନ୍ଦ ବିଲବାଡ଼ି ଚାଷବାସ ବୁଝୁଛି । ତାର ଗୋଟିଏ ବୋଲି ପୁଅ, ଘାଟଶିଳା କଲେଜରେ ପଢୁଛି । ବଳେ ଦେଖାଦେବେ । ମଝିଆଁ ସୁନନ୍ଦ କାନାଡ଼ାର ବାସିନ୍ଦା । ସେଠି ପ୍ରଫେସର ହେଇଛି । ଦି ଚାରିବର୍ଷରେ ଥରେ ଆସି ବୁଲିଚାଲି ଯାଏ । ବଡ଼ବୋହୂ ନାତିଟିକି ଜନ୍ମଦେଇ ଚାଲିଗଲେ । ପୁଅ ସବୁ କାମଦାମ ଭିତରେବି ବଡ଼ ଉଦାସୀ । ବିନୋଦବାବୁଙ୍କୁ ବଡ଼ପୁଅ ଆଉ ମୁଁ ଯେତେ କହିଲୁ ଯେ ଏ ଜଳସେଚନ ପ୍ରକଳ୍ପଟା ଏଠି କରନେଇଁ, ପଇସା ବରବାଦ ହବ, କଡ଼ାକରଲାଭ ମିଳିବ ନାହିଁ । ବରଞ୍ଚ ପଡ଼ିଶାଗାଁ ରାଣୀବନ୍ଧର ହୁଡ଼ାଗୁଡ଼ା ମରାମତି କରା, ସ୍ଲୁଇସ୍ ଲଗା, ପକ୍କାନାଳ ତିଆରି କରା । ସେଇବାଟେ ରାଣୀବନ୍ଧ ପାଣି ବିଲକୁ ନବା ବ୍ୟବସ୍ଥା କର । ଏବେ ଆପଣାଛାଏଁ ତ ପାଞ୍ଚଶଏକର ଜମି ପାଣି ପାଉଚି । ବନ୍ଧଟି ଉଝୁଳେଇ ଦେଇ, ହୁଡ଼ାମରାମତି ଓ ପକ୍କାନାଳ କରେଇଦେଲେ ହଜାରେ ଏକର ଜମି ପାଣି ପାଆନ୍ତା ! ଶୁଣିଲା ନେଇଁ । କହିଲା- ସେ ଗାଁଟା ମାଛଦଳର । ଆମ ଗଛଦଳ ସେଠି ଯେତେ ଯାହା କଲେବି ଆମକୁ ଭୋଅଟ ଖଣ୍ଡେ ମିଳିବନାହିଁ । ଆମେ ସେଠେଇଁ କାଇଁକି ପଇସା ବିନର୍ବ୍ୟୟ କରିବୁ । ଏଇଠି ଗୋଟେ ମଜବୁତିଆ ଲମ୍ବା ବନ୍ଧ ବାନ୍ଧିଦେଲେ, ଘାଟଶିଳା ଗଡ଼ାଣି ପାଣି ଜମିଯାଇ କେଡ଼େବଡ଼ ବନ୍ଧଟିଏ ହେଇଯିବ, ଦେଖିବ ରହ ! ମୁଁ ବୁଝେଇଲି, ଦେଖ୍ ପୁଅ, ସରକାର ଦେଶର । ଟଙ୍କା ଦେଶର । ଏ ଗାଁ ହଉ କି ସେ ଗାଁ ହଉ, କାମହବ ଦେଶର, ଗଛ ହଉ କି ମାଛ ହଉ, ସବୁଦଳ ଦେଶର । ତୋ ଭାଇ ଆଉ ମୁଁ ଯେମିତି କହୁଛୁ ସେମିତି କଲେ, ଆମଗାଁତଳ ଜମି ସମେତ ଆଉ ଚାରିପାଞ୍ଚଟି ଗାଁର ନିକୁଛିଆରେ ହଜାରେ ମାଣ ଜମି ଦୋ ଫସଲି ପାଇଁ ପାଣି ପାଆନ୍ତା ।'

କହିଲା, 'ନାଇଁ, ଦେଖିବ ରଇଥା । ଏଇଠି ହଉ, ଏ ଓପରମୁଣ୍ଡର ପାଞ୍ଚଖଣ୍ଡ ଆଦିବାସୀ ଗାଁ ସମେତ ଆମ ଗାଁର ଓପର ଜମିବି ପାଣି ପାଇବ । ସରକାରୀ ହାକିମ, ଇଂଜିନିୟର ବି ସେଇକଥା କହିଲେ । ତାଙ୍କର ଆଉଗୋଟେ ଯୁକ୍ତିହେଲା ଯେ ଏ ପ୍ରକଳ୍ପ ପାଇଁ ଟଙ୍କା ଆଦିବାସୀ ବିଭାଗର ଯୋଜନା ବରାଦରୁ ଆସିବ । ଆଦିବାସୀ ଗାଁ ଉପକାର ପାଇବ ବୋଲି ବ୍ୟବସ୍ଥା ନକଲେ ଟଙ୍କା ମିଳିବ ନାହିଁ । ସମସ୍ତେ ମତେ କହିଲେ, 'ଦେଖିବେ, କେତେ ସଫଳହେବ ଏ ପ୍ରକଳ୍ପ ।' ଦେଖୁଚି ! ତ୍ରିଭୁବନ ମହାଦେବୀଙ୍କ ଲୋକେ ନିର୍ବୋଧ ନଥିଲେ । ପାହାଡ଼ର ଅବସ୍ଥିତି, ମାଟିର ଢ଼ାଲୁ - ସବୁ ବିଚାର କରି ଯୋଉଠି ଖୋଲିଲେ ପାହାଡ଼ ଓ ମାଳରେ ମରୁଥିବା ପାଣିର ମାଟିତଳ ସୁଅକୁ ଧରିହବ - ସେଇମିତି ଜାଗାଏର ବନ୍ଧ ଖୋଳେଇଲେ ଯେ, ଏବେବି ପାଞ୍ଚଶ ଏକର ଜମି ମାଡୁଚି !' ବୁଢ଼ା ଲମ୍ବା ନିଃଶ୍ୱାସଟାଏ ଛାଡ଼ିଲେ, 'ଛାଡ଼ନ୍ତୁ ସେ କଥା ଭାବି ଲାଭନାହିଁ ।' ଡେ଼ରି ହେଇଥିଲା । ତଥାପି ନ ପଚାରି ରହିପାରିଲିନି, 'ଆପଣଙ୍କ ଖଦଡ଼ପିନ୍ଧା କହୁଚି ଆପଣ ଗାନ୍ଧୀ ଆନ୍ଦୋଳନରେ ଥିଲେ । ସେତେବେଳେର ନେତାଙ୍କ ସାଙ୍ଗରେ ଭାବଲାଭ ଥିବ । ରାଣୀବନ୍ଧ ଉଝୁଳା ଆଉ ମରାମତି ପାଇଁ ସେମାନଙ୍କୁ ପ୍ରବର୍ତ୍ତାଇଲେ ନାହିଁ ?'

ବୁଢ଼ା ଆଉ ଗୋଟେ ଦୀର୍ଘଶ୍ୱାସ ଚାପିଦେଇ କହିଲେ, 'କହିଥିଲି । ଲେଖିଥିଲି । ଅନେକଦିନ

ତଲେ ଆମ ପ୍ରଧାନମନ୍ତ୍ରୀ, ସେତେବେଳେ ମୁଖ୍ୟମନ୍ତ୍ରୀଙ୍କି ପ୍ରଧାନମନ୍ତ୍ରୀ କୁହାଯାଉଥିଲା - ଆସିଥିଲେ । କହିଲେ, କରିବା ଯେ ଆଗ ହୀରାକୁଦଟା ସରୁ । ଓଡ଼ିଶାକୁ ଶଏକୋଟି କରଜ ଆଣିବାକୁ ହଉଚି । ହୀରାକୁଦ ବିଜୁଳି ଆଉ ପାଣିରୁ ସବୁ ଭରଣା ହେଇଗଲେ, ଯୋଉ ଆୟହେବ, ସେଇଥିରେ କରିବା ।' ମୁଁ ଯୁକ୍ତିକରିଥିଲି, 'ଦେଖନ୍ତୁ । ଓଡ଼ିଶାରେ ପଚାଶ ହଜାର ଗାଁ । ଆପଣ ଗୋଟେ ହୀରାକୁଦ ନକରି ଯଦି ଏ ପଚାଶହଜାର ଗାଁରୁ କୋଡ଼ିଏହଜାର ଗାଁରେ ଗାଁ ପିଛା ପଚାଶହଜାର ଲେଖାଏଁ ଖର୍ଚ୍ଚ କରନ୍ତେ, ସବୁ ପୁରୁଣା ବନ୍ଧ, ଜଳାଧାର, କଟା, ପୋଖରୀ ଉଝଲା, ମରାମତି ହେଇ ଆଉରି ନୂଆ ପାଞ୍ଚ ଦଶହଜାର ପୋଖରୀ ହୁଅନ୍ତା । ଚାଷୀଙ୍କୁ ପାଣିପାଇଁ ହରବଗ ହବାକୁ ପଡ଼ନ୍ତାନି । ଲୋକେ କାମ ପାଆନ୍ତେ । ଗାଁ କମିଟି କାମ କରାନ୍ତେ । ଠିକାଦାର କି ଇଂଜିନିୟର ବାଟମାରଣା କରନ୍ତେ ନାହିଁ । ଥରେ ଷୋଳପଣି ଚାଷ ବର୍ଷସାଗ ହେଇଗଲେ, ଲୋକଙ୍କ ପଇସାରେ ଆପଣ ଋଣ ନ ଆଣି ବିଜୁଳି କାରଖାନା ବସାନ୍ତେ ।'

'ତମ ମୁଣ୍ଡରେ ଭୂତ ପଶିଚି । ହଇହୋ ପୃଥିବୀ କୁଆଡ଼େ ଗଲାଣି ! ବିଜୁଳି ଦରକାର । ବନ୍ୟାନିୟନ୍ତ୍ରଣ ଦରକାର । ଜଳସେଚନ ଦରକାର । ମହାନଦୀ ସମେତ ସବୁ ନଈଙ୍କି ସୁନାବ୍ୟା କରିବା ଦରକାର । ଏ ବହୁମୁଖୀ ଯୋଜନା - ଏଇଠି ସରିବନି । ତମଆମ କାଳକ ଯାଇ ଆଉରି କେତେଦିନ ଚାଲିଥିବ । ଆଉ ଏ ଯୋଉ ବାଟ ମାରଣା କଥା କହୁଚ, ତମ ତ୍ରିଭୁବନ ମାହାଦେଈ ଆଉ କପିଳେନ୍ଦ୍ର ଦେବ ଦେଉଳ ତୋଳେଇଲାବେଳେ ଶିଳ୍ପୀ, ପାଇଟାଳ, ପାଇଟୁଣି ପଥରଖଣ୍ଡେ କି ଝୁଡ଼ିଦିଇଟା ନେଇ ନଥିବେ ? ଏ ଗୁରା ଦେଖନାହିଁ । ଶଏକୋଟି ଖର୍ଚ୍ଚହବ । ହେଲାଏବେ ଦଶକୋଟି ବାଟମାରଣା ହବ । ଏଇ ଦେଶରେ ରହିବ ନା ଆଉ କୁଆଡ଼େ ଯିବ ? ଆଉ ଯୋଉ ନବେ କୋଟିର କାମହବ ?' ବଡ଼ଲୋକ । ତାଛଡ଼ା ମୋଠଇଁ ଦଶବର୍ଷବଡ଼ । ଗୁରୁଜନ । ମୁଁ କଥା ବଢ଼େଇନଥିଲି । ବନ୍ୟା ନିୟନ୍ତ୍ରଣ ହେଇଚି ନା ନଈଶେଜ ଉଂଚାହେଇ ଆଉ ମୁହାଣ ପୋତିହେଇ ବେଶୀ ବନ୍ୟା ହଉଚି ? ବିଜୁଳି ହାଲ୍‌ତ ଦେଖୁଚି । ଋଣ ଭରଣା ହଉଚି ନା ବଢ଼ୁଚି ? ସବୁ ଦେଖୁଚି । ବହୁମୁଖୀ ପ୍ରକଳ୍ପ ନା ସର୍ବମୁଖୀ ଦୁର୍ଭୋଗ ତା'ବି ଦେଖୁଛି । ବୁଝିଲେ ବାବୁ, ଗାନ୍ଧୀଛଡ଼ା ଆମ ସେକାଳର ଆଉ ସବୁ ନେତାଏ ଯୋଉ ପଶ୍ଚିମ ମୁହାଁହେଲେ, କଣନା ଦେଶଟାକୁ ଆମେରିକା କି ରୁଷିଆ କରିଦେବେ - ତା'ରି ଫଳ ଏସବୁ । ନହେଲେ ସ୍ୱାଧୀନତାର ଏତେ ବର୍ଷପରେ ଦେଶରେ ମୋଟ ଚାଷଯୋଗ୍ୟ ଜମିର ତିନିଭାଗରୁ ଭାଗକରେ କି ପାଣି ମାଡୁଥାଆନ୍ତା !'

'ତମର ସବୁବେଳେ ଏଇମିତିଆ କଥା । ଲୋକେ ଜହ୍ନଛାଡ଼ି ଶୁକ୍ରରେ ପହଂଚିବାକୁ ବାହାରିଲେଣି, ତମେ ସେଇ ମାନ୍ଧାତା ଅମଳରେ ପଡ଼ିଥା । ଅରଟ, ଖଦଡ଼, ଢେଙ୍କି, ପାଚିଆ, ତେଲିଘଣା, ବଳଦଗାଡ଼ି, ନିମ ଦାନ୍ତକାଠି ! କ'ଣ ନା ଆତ୍ମନିର୍ଭରଶୀଳ !' ତାରୁଣ୍ୟର ଉଦ୍ଦାମତାରେ ଟବଗବ ଗୋଟେ କଣ୍ଠସ୍ୱରରେ ଅନେଇଁଦେଖିଲି, ଷୋଳ ସତର ବର୍ଷର ପିଲାଟିଏ । ନେତା ପୋଷାକ । ମାନେ, ଜିନ୍‌ପ୍ୟାଣ୍ଟ, ହାଓ୍ୱାଇ ଚପଲ, ଢ଼ିଲା ମୋଟ ଖଦଡ଼ କୁରୁତା । ବୁଢ଼ା ଚିହ୍ନା କରେଇ

ଦେଲେ, 'ବଡ଼ନାତି, ବଡ଼ପୁଅର ପୁଅ । ଘାଟଶିଳା କଲେଜରେ ପଢୁଚି । ଦାଦା ତାର କଲେଜଟା କରୁଚିତ, ନାତି ଆମର - କ'ଣ ହେଇଚ ହେ କୃଷ୍ଣଚନ୍ଦ୍ର ?'

'ପୁଣି କୃଷ୍ଣଚନ୍ଦ୍ର । ମୁଁ ପରା ସତ୍ୟପାଠକରି, ବିଜ୍ଞାପନଦେଇ ନାଁ ବଦଳେଇଚି 'କିସାନ୍ ସାନ୍, ' କଲେଜ ପ୍ରେସିଡ଼େଣ୍ଟ ।'

'ହେଲା ହେ କିସାନ୍ ସାନ୍ । ଆଜି କାର୍ଯ୍ୟକ୍ରମ କ'ଣ ?'

'ପୂର୍ଣ୍ଣ ସାକ୍ଷରତା ଅଭିଯାନର ଉଦ୍‌ଯାପନ ସଭାପାଇଁ ଶୋଭାଯାତ୍ରା ଅର୍ଗାନାଇଜ୍‌କରିସାରି, ସଭା ସରିଲାପରେ ସଂଙ୍ଗରେ ବିକ୍ରମପୁର ହଲ୍ଟ ।'

'ବାଃ, ମୁଁତ ଏଇନା ବିକ୍ରମପୁର ଯାଉଚି ?'

'ହଁ, ରୁରାଲ ସ୍ପୋର୍ଟ୍‌ସ୍ । ସେ କାର୍ଯ୍ୟକ୍ରମ ମୋ ସେକ୍ରେଟେରି କରୁଚି ।'

ଘଣ୍ଟାଦେଖିଲି ସାଢ଼େ ନଅଟା । ଅଧଘଣ୍ଟାକରେ ବିକ୍ରମପୁର ପହଂଚିବାକୁ ହେବ । ବୁଢ଼ାଙ୍କୁ ନମସ୍କାର ହେଲି । କହିଲେ, 'ଆପଣଙ୍କ ସହ ଆଳାପରେ ଭାରି ସନ୍ତୋଷ ମିଳିଲା । ଆପଣ କିନ୍ତୁ ପରିଚୟ ଦେଲେନାହିଁ ।'

'ମହାଖୁଡ଼ । ଏଇ ସେ ଜାମୁଶୋଳ ପାହାଡ଼ ସେପିଠି ତିଳକଣାରେ ଘର । ନରି ମହାଖୁଡ଼ଙ୍କ ପୁଅ ।'

ବୁଢ଼ାଙ୍କ ମୁହଁ ଉଜ୍ଜ୍ୱଳ ହେଇଗଲା, 'ନରିଭାଇଙ୍କ ପୁଅ ! ବଡ଼ପୁଅ ! ବହୁଦିନ ତଳେ ଥରେ ଏଇବାଟେ ଆସିଥିଲେ ସେ । କେତେ ଦୁଃଖସୁଖ ପଡ଼ିଥିଲା - କି ସମୟ ଥିଲା ସିଏ । ତମେ ପୁଅ କପଟ କଲ, ପହିଲୁ ସିନା ଚିହ୍ନା ଦେଇଥାନ୍ତ । କିମିତି ଅଛନ୍ତି ନରିଭାଇ ଆଉ ତମ ବୋଉ ।'

'ଭଲ ଅଛନ୍ତି । ଗାଁରେ ରହୁଚନ୍ତି । ଆଗେ ଚିହ୍ନା ଦେଇଥିଲେ ତ ଅନ୍ୟକଥା ପଡ଼ିଥାନ୍ତା । ଯୋଉକଥା ଯିମିତି ଶୁଣିଲି, କିମିତି ଶୁଣି ହେଇଥାଆନ୍ତା ?'

ବୁଢ଼ା ପ୍ରସନ୍ନ ହେଇଗଲେ । ହାତ ବଢ଼େଇ ମୁଣ୍ଡ ସାଉଁଳି ଦେଲେ । ନାତିବାବୁ ମଧ୍ୟ ଗୋଟେ ହାତଟେକି କହିଲେ, 'ବାଇ, ସାର୍ ।'

ଆଶଙ୍କା କରୁଥିଲି ଯେ ଚାଳକ ମହାଶୟ ଅପ୍ରସନ୍ନ ହେଉଥିବେ । ମାତ୍ର ମୁଁ ଗାଡ଼ିପାଖକୁ ଯିବାମାତ୍ରେ ସେ ହସହସ ମୁହଁରେ କବାଟ ଫିଟେଇଦେଇ କହିଲେ, 'ସାଢ଼େ ନଅଟା । ପନ୍ଦର ମିନିଟ୍‌ରେ ପହଞ୍ଚିଯିବା । ବୁଢ଼ାଙ୍କ ନାତିବାବୁ ଭାରୀ ବଢ଼ିଆ ପିଲା । ମୋ ସାଙ୍ଗରେ ଗପସପ ହେଲେ । ପେଟେ ଜଳଖିଆ ଖୋଇଲେ । ସେ କଲେଜଟୋକାଏ ଆପଣଙ୍କଠୁ ପଇସାନେଇଥିବା ତାଙ୍କୁ ଜଣାନ୍ତେ କହିଲେ, ତାଙ୍କ ମଜା ନିକାଳୁଚି ଆଜି ! ମଣିଷ ଚିହ୍ନୁ ନାହାନ୍ତି ? ତମକୁ ତ ପଚାରି ପାରିଥାନ୍ତେ କହି ମୋ ହାତରେ ଦଶଟଙ୍କା ଦେଇଗଲେ । ମାତ୍ର ତାଙ୍କ ପ୍ରସନ୍ନତାର କାରଣ ତ ଏହାନୁହଁ ! ଏତକ ପରେ ଯୋଡ଼ିହେଇଯାଇ ହସଟା ଟିକିଏ ଗହୀରା କରିଚି ଯାହା । ଗାଡ଼ିରେ ବସିଲାମାତ୍ରେ କହିଲେ, 'ଆଜ୍ଞା, ଦିଦିମଣି କହୁଥିଲେ ଏଇଟା ଆପଣଙ୍କ ଅଞ୍ଚଳ - କେତେ

ଲୋକଙ୍କ ସାଙ୍ଗେ ଚିହ୍ନା ପରିଚୟ । କେଉଁଠି ଅଟକିବେ ହୁଏତ । ମୁଁ ଯେମନ୍ତେ ଡରବର ନହୁଏଁ ।'

'ଦିଦିମଣି ?'

'ଯୋଜନାମନ୍ତ୍ରୀଙ୍କ ଦିଦି । ଭାରୀ ଭଲଲୋକ ଆଜ୍ଞା । ମୋ ହାଲ ହଇକତ ପଚାରିଲେ । କହିଲି ଯେ ମୋ ସ୍ତ୍ରୀକୁ କାମଟିଏ କରେଇଦେଲେ ଦିପ୍ରାଣୀ ବଞ୍ଚିଯାଆନ୍ତୁ । କହିଲେ - ଆରେ, ଇଏ ଗୋଟେ କାମରେ କାମ ! ଗୋପାଳଙ୍କୁ କହିଦେବି । ଜାଣିଚ - ସେ ମୁଖ୍ୟମନ୍ତ୍ରୀ ହବା ଚଉଦଣା ପକ୍କା । ସେଇଥିପାଇଁତ ଦିଲ୍ଲୀଗଲା ।'

'ଆମ ହାକିମ ?'

'ପ୍ରଧାନମନ୍ତ୍ରୀଙ୍କ ବ୍ୟକ୍ତିଗତ ସହକାରୀ ଆପଣଙ୍କ ସାହାବଙ୍କ ଗାଁ ଲୋକ । ସେଥିପାଇଁ ସାହାବ ଗଲେ ନା ! ଦିଦିମଣି କହିଚନ୍ତି - ହୁସିଆର କାହାକେ କିଛି କହିବୁ ନାହିଁ । ଆଗ କାମଟା ହେଇଯାଉ । ସେଥିପାଇଁତ ଏତେବେଳଯାଏ ଚୁପ୍‌ଚାପ୍ ଥିଲି । ପୁଣି ବିଚାରିଲି, ନା ସାହାବତ ଦିଦିମଣିଙ୍କ ନିଜଲୋକ, ସେ କ'ଣ ଜାଣିନଥିବେ କି ? ସତ ନା ଆଜ୍ଞା ?'

କ'ଣ ବା କହିବି ? ଦିଦିମଣିଙ୍କି ଅବଶ୍ୟ ଜାଣେମୁଁ । ସେବି ଏମିତି ଡ଼ାହାମିଛ କହିପାରନ୍ତି ଭାବି ଆଶ୍ଚର୍ଯ୍ୟ ହେଲି । ବଡ଼ପାଟିରେ ହସିଉଠିବାକୁ ବାହାରି, ଚାପିନେଲି । ଚାଳକ ଜାଣିଲେ ଯେ ଏ ଆସାମୀଟା, ଗହୀରପାଣିର ମାଛ । ମୁହଁ ଫିଟେଇ ମତେ କିଛି କହିବାକୁ ପଡ଼ିଲାନାହିଁ । ମୋ ମନରେ ତର୍କ । କୋଉଟା ଆଗେ ରପ୍ତ କରିବାକୁ ହୁଏ - ଆତ୍ମ ପ୍ରବଞ୍ଚନା ନା ଅନ୍ୟକୁ ପ୍ରବଞ୍ଚନା ?

ଠିକ୍ ଦଶଟାରେ ବିକ୍ରମପୁର ପହଞ୍ଚିଲୁ । ବ୍ଲକ ଅଫିସ ପାଖ ପଡ଼ିଆରେ ବଙ୍କା ଟଙ୍କା ହୋଇ ପୋତା ହୋଇଥିବା ବାଉଁଶ ଖୁଣ୍ଟରେ ନଡ଼ିଆକତା ଦଉଡ଼ି ବନ୍ଧାହୋଇ ସେଥିରୁ ନାଲି ନେଳି ପତାକାମାଳ ଝୁଲୁଥାଏ । ଗୋଟେ କଣରେ ପାଲଟଣା ଛାମୁଡ଼ିଆ । ଛାମୁଡ଼ିଆ ଓପରେ ଗୋଟେ ଓ ଠିକ୍ ଓଲଟା ପଟେ ଗୋଟେ ବାଉଁଶ ଖୁଣ୍ଟରେ ଆଉଗୋଟେ ଲାଉଡ଼ ସ୍ପିକର ଚୁଙ୍ଗା । ପଡ଼ିଆର ବାହାର ବଳୟରେ ଚୂନଡ଼ଳାହେଇ ଟ୍ରାକ୍ କଟାଯାଇଚି । ଆଉ ଭିତର ବଳୟରେ ବାଲି ଭର୍ତ୍ତି ଗୋଟେ ଖାଲ । ଖାଲ ଆଗରେ ଦିଇଟା ବାଉଁଶ ଖୁଣ୍ଟ । ଡ଼ିଆଁକୁଦା ସେଇଠି ହେବ । ପଡ଼ିଆରେ ମୋଟ ଚାରି ପାଞ୍ଚୋଟି କଲେଜ ପଢୁଆ ପରି ଦେଖା ଯାଉଥିବା ପିଲା । ଛାମୁଡ଼ିଆ ତଳେ ଆଉ ଦି ଚାରିଜଣ । ଗାଡ଼ି ଅଟକିବା ସାଙ୍ଗେ ସାଙ୍ଗେ ଦିଦଳଯାକ ଦଉଡ଼ି ଆସିଲେ, 'ନମସ୍କାର ସାର୍ । ଆମର ଟିକିଏ ଡ଼େରି ହେଇଯାଇଚି । ତେବେ ତିନିଟା ବେଳକୁ ସରିଯିବ । ମୋଟେ ପାଞ୍ଚୋଟି ଆଇଟମ । ପୁଅ ଝିଅ ଅଲଗା ଅଲଗା କମ୍ପିଟ୍ କରିବେ । ମାନେ ଦଶଟା ଆଇଟମ ହେଇଯିବ । ରେସ୍ ଗୁଡ଼ାତ ପନ୍ଦର ମିନିଟ୍‌ରେ ସରିଯିବ । ଶଏ ମିଟର, ଦୁଇଶ ମିଟର, ଚାରିଶ ମିଟର ଦଉଡ଼ । ଜଂପ୍ ଦିଇଟା-ହାଇ, ଆଉ ଲଙ୍ଗ୍ । ସେଇଥିରେ ଯାହା ଘଣ୍ଟାଏ ଖଣ୍ଡେ ଲାଗିବ ।'

ତା'ମାନେ ଆରମ୍ଭ ହବାକୁ ଆଉରି ଦିଘଣ୍ଟା ଲାଗିଯିବ । କୁଆଡ଼େ ଟିକିଏ ଆଖ ପାଖରେ

ବୁଲି ଆସିଲେ ହୁଅନ୍ତା ।' ଭାବୁଥିଲି ଏମିତି ଘଣ୍ଟାଦେଖି ନ ଆସି ନାରୁମଉସାଙ୍କ ପାଖରେ ବସିଥିଲେ ଭଲ ହେଇଥାନ୍ତା । ପିଲାଏ କହିଲେ, 'ସାର୍, ଆପଣଙ୍କୁ ଅଭ୍ୟର୍ଥନା କରିବା ପାଇଁ ଆମ କମିଟି ପ୍ରେସିଡ଼େଣ୍ଟ ଆଦି ହେଇ ଆସୁଚନ୍ତି । ସେମାନେ ବ୍ଲକଘରେ ଅପେକ୍ଷା କରୁଥିଲେ ।' ଦେଖିଲି ଆଠଦେଶ ଜଣ ନାନା କିସମର ପୋଷାକ ପିନ୍ଧା ଲୋକ ଆମଆଡ଼େ ଆସୁଚନ୍ତି । ସବା ଆଗଜଣକ ବୋଧହୁଏ ପ୍ରେସିଡ଼େଣ୍ଟ । ପଇଁଚାଳିଶ ପଚାଶ ବର୍ଷର ମାତଲର ମଣିଷ । ସିଲ୍କ ପଞ୍ଜାବୀ, ଫିନ୍ ଫିନ୍ ସରୁ ଧୋତି, ଚମଡ଼ା ଚଟି, ପାଟିରେ ପାଟିଏ ପାନ । ହାତୀପରି ଝୁଲି ଝୁଲି ପଲାସି ଆସୁଚନ୍ତି । ତାଙ୍କ ଡ଼ାହାଣରେ ଟିକିଏ ପଛକୁ ଫେଡ଼େଡ଼ ଜିନପେଣ୍ଟ, ଢ଼ିଲା ସାର୍ଟ ଓ ଦିନମ୍ବରୀ ଷ୍ଟାରଜୋତା ପିନ୍ଧା ସତର ଅଠର ବର୍ଷର ପିଲାଟିଏ । ଘାଟଶିଳା କଲେଜ ୟୁନିୟନ ଆଉ ଏଠା କମିଟିର ସେକ୍ରେଟେରି । ପଛେ ପଛେ ହାଫ୍ ହାଓ୍ୟାଇ - ଧୋତି, ପାଜାମା - ପଞ୍ଜାବୀ, ଷ୍ଟୋନଓ୍ୟାସ୍ ସାର୍ଟ, ବ୍ୟାଗି ଟ୍ରାଉଜର, ଖୋର୍ଦ୍ଧା ଲୁଙ୍ଗି - ହାତକଟା ଗେଞ୍ଜି, ଖଦଡ଼ଧୋତି - ଚାଦର, ଖଦଡ଼ଧୋତି - ଉଠାକଲର୍ ପଞ୍ଜାବୀ ଓଗେର ଓଗେର ନାନାଲୋକ ଆସି ମତେ ଘେରିଗଲେ । ସିଲ୍କ ପଞ୍ଜାବୀ କହିଲେ, 'ଆସନ୍ତୁ ଆଜ୍ଞା ଟିକିଏ ଜଳଖିଆ' ।

ଏସବୁ ବ୍ୟାପାରରେ ପ୍ରତିବାଦ ନିଷ୍ଫଳ । ମନାକଲେ ଅଯଥା ରେଷାରେଷି ସୃଷ୍ଟି ହବ । ତେଣୁ ସାଙ୍ଗରେ ଚାଲିଲି । 'ଆଜ୍ଞା, ଯୋଉ ବାଟରେ ଗାଡ଼ି ଆଣିଲେ ଭାରୀ ଧୂଳି, କିଛି ଅସୁବିଧା ହେଇନାଇଁତ, କେତେବେଳେ ବାହାରିଲେ ?' ଇତ୍ୟାଦି ଗତାନୁଗତିକ ସମ୍ଭାଷଣ ଓ ପ୍ରଶ୍ନ ।

ବ୍ଲକର ସଭାକକ୍ଷ । ଟେବୁଲ ଉପରେ ଧଳା ବିଛଣା ଚାଦର ପଡ଼ି ସଜାହେଇଚି । ବାରଣ୍ଡାରେ ପାଣିଭର୍ତ୍ତି ଦିଇଟା ପ୍ଲାଷ୍ଟିକ ବାଲ୍‌ଟି । ବାଲ୍ଟି କଡ଼ରେ ମଗ୍ ଝୁଲୁଚି । ବାଲ୍ଟି ବା ମଗ କିଣାହେଲା ଦିନରୁ ଏଯାଏ କେବେ ମଜା ହେଇନାହିଁ । ପଚାରିଲି, 'ସର୍ଫ ପାଉଡ଼ର କି ପାଉଁଶ ମିଳିବ ?' ବାବୁମାନେ କ'ଣ ଭାବିଲେ କେଜାଣି ମୁହଁ ଚୁହାଁ ଚୁହିଁ ହେଲେ । ଜଣେ, କାହାକୁ ହୁକୁମ ଦେଲେ, 'ଗଲୁ ହଗୁରା ଦୋକାନରୁ ପ୍ୟାକେଟ୍ଟେ ସର୍ଫଘେନି ଆସିବୁ ।' ମୁଁ ଟେବୁଲ ପାଖରେ ଗୋଟେ ଚଉକି ଦଖଲ କଲି । ଚଉକି ପଛଆଡ଼େ କୋଚଟ ମଇଳା ଟର୍କିସ୍ ତଉଲିଆ ।

ପାଉଡ଼ର ଆସିଲା । ଲୋକଟି ହାତରୁ ପ୍ୟାକେଟନେଇ, ଖୋଲି ଟର୍କିସ ଟାଓ୍ୱେଲରେ ମେଞ୍ଚାଏ ଢ଼ାଳି ଚାଲିଲି ବାରଣ୍ଡାକୁ । ଗୋଟେ ବାଲ୍ଟି ପାଣି ଢ଼ାଳିଦେଇ ପାଉଡ଼ର ମିଶା ଟାଓ୍ୱେଲ ଓଦାକରି ବାଲ୍ଟି ମାଜିବାକୁ ଆରମ୍ଭ କରିଛି, 'ହାଁ ହାଁ କହି ଖଦଡ଼ ଧୋତି-ଚାଦର ଜଣକ ମୋଠୁ ବାଲ୍ଟି ଛଡ଼େଇନେଇ ମାଜିବାରେ ଲାଗିଲେ । ଲୁଙ୍ଗି ପଟେଇ ଆର ବାଲ୍ଟିଟା ମାଜିବାକୁ ବାହାରିଲା ବେଳକୁ ଖଦଡ଼ ଧୋତି କହିଲେ, 'ଥାଉ, ଆଗ ମଗ ଦିଇଟା ମାଜିଦେ । ମଜା ସରିଲେ ସେ ପାଣିରେ ଏଗୁରା ଧୋଇବା । ଧୂଆ ବାଲ୍ଟିରେ ବାକିତକ ପାଣି ରଖି ସେଟା ମାଜିବା । ଏ ମଇଳା, ତଉଲିଆ କି ସର୍ଫ କାମ ନୁହଁ । ବାବୁ କହିଲାପରି ଚୁଲେ ପାଉଁଶ ନହେଲେ ବନମାଟି ଘିନିଆ । ନଡ଼ିଆ କତା ଦିଚାରିଫଡ଼ା ଆଣିଥିବୁ ।' ବାସ୍ ଦଉଡ଼ା ଧାପଡ଼ା ଚାଲିଲା । ମୋଟା ମାତଲର ବାବୁଟି ଛିଡ଼ାହେଇ ଦୃଶ୍ୟ ଦେଖୁଥାନ୍ତି । ପଚାରିଲି, 'ଆପଣ ?'

'ଆଜ୍ଞା ହାଇସ୍କୁଲ ହେଡ଼ମାଷ୍ଟର । ଏ ଖେଳକମିଟି ସଭାପତି ।'

ବାଃ ଭଲହେଲା । ବେଳତ ଅଛି, ଚାଲନ୍ତୁ ସ୍କୁଲ ଆଡ଼େ ବୁଲି ଆସିବା ।'

'ଆଜ୍ଞା, ଆଜି ସ୍କୁଲ ଛୁଟି । ପିଲାଏ ଘରେ । ମାଷ୍ଟ୍ରମାନେ ତାଙ୍କ ଗାଆଁରେ । କ'ଣ ଆଉ ଦେଖିବେ ?'

'ଛୁଟି  କାହିଁକି ?'

'ଆଜ୍ଞା ଆମର ଏଠି ସ୍ପୋର୍ଟସ, ଛୁଟି ହବନେଇଁ ?'

'ହବ ଯେ, ଖେଳଦେଖିବା ପାଇଁ ବା ଖେଳରେ ସାହାଯ୍ୟ ସହଯୋଗ କରିବା ପାଇଁ ସିନା ଛୁଟି ! ମାଷ୍ଟ୍ରଙ୍କୁ ଘରକୁ ଛାଡ଼ିଲେ କିମିତି ?' 'ଆଜ୍ଞା, ଛୁଟିପରା ! କାହାକୁ ଅଟକାଇବା ଇଛା ଅଛି ଆମର ?'

'ହଉ ଏଣିକି ଛୁଟି କରିବେ ନାହିଁ ।'

ମୁଁ ଜାଣୁଥିଲି ଆଉ ଯାହା ହଉ ନହଉ, ମତେ ବାଇଆ ବୋଲି କହିହେବେ  ଏମାନେ । କିଛି ସମୟପରେ ବାଲ୍ଟି, ମଗ୍, ତଉଲିଆ ସବୁ ମଜା, କଚା, ଧୁଆ ସରିଲା । ସଫା ପାଣି ଆସିଲା । ଜଳଖିଆ ପ୍ଲେଟ୍, ଗ୍ଲାସ୍ ସବୁ ସଫାହେଇ ଢକଢକ ଦିଶିଲେ । ଜଳଖିଆ ପରସା ହେଲା । କେବଳ ଖଦଡ଼ ଧୋତି ଚାଦରଙ୍କ ଛଡ଼ା ସମସ୍ତେ ବସିଗଲେ । ସିଙ୍ଗଡ଼ା, ନିମକି, କାଜୁ ବାଦାମ,  ସନ୍ଦେଶ, ରସଗୋଲା, ଆଳୁଚପ, କଦଳୀ, କମଳା, ଅଙ୍ଗୁର, ସେଓର ପାହାଡ଼ ଗୋଟିଏ ଲେଖାଏଁ । ମୁଁ ସିଙ୍ଗଡ଼ାଟିଏ ହାତରେ ଉଠେଇନେଇ କହିଲି, 'ଆରମ୍ଭ କରନ୍ତୁ ।' ତାପରେ ପ୍ଲେଟଗୁଡ଼ା ଖାଲି ହବାଯାଏ ଆଉକେହି ମୁଣ୍ଡ ଉଠେଇ ନାହାନ୍ତି । ମୁଁ ମୋ ପ୍ଲେଟରୁ ପାଖ ପାଖ ଲୋକମାନଙ୍କୁ ବଢ଼େଇବାରେ ଲାଗିଥାଏ । 'ନାହିଁ ନାହିଁ' କହି, ସେମାନେ ନେଇ ଖାଉଥାନ୍ତି । ମୋ ପ୍ଲେଟବି ଖାଲିହେଲା । ସେଉଠୁ ଆସିଲା ଚା, ଲିମ୍କା, ଥମ୍ସଅପ୍, ଲେହର ପେପ୍ସି ସବୁ । ଚା' କପଟିଏ ଧଇଲି । ଅପେୟ । ଥୋଇଦେଲି ।

ଖଦଡ଼ ଧୋତି ପାଖରେ ନଇଁପଡ଼ି ଧୀର କଣ୍ଠରେ କହିଲେ, 'ଟିକିଏ ଆସିବେ ?' ଉଠି ତାଙ୍କ ସାଙ୍ଗରେ ବାହାରକୁ ଗଲି । କହିଲେ, 'ମୋ ବାପା ଏଠାର ପ୍ରଥମ ବିଧାନସଭା ସଭ୍ୟଥିଲେ । ଦ୍ୱିତୀୟଥର ହାରିଗଲେ । ମତେ ରାଜନୀତି ନକରିବାକୁ କହିଥିଲେ । କରିନାହିଁ । ତେବେ ଆଉ ଗୋଟେ କାମ କରୁଚି - ଟିକେ ଦେଖି ଆସିବେ ?' କୌତୁହଳ ହେଲା । ଟିକିଏ ମଜାକରି ବିଡ଼ିବା ପାଇଁ କହିଲି, 'ଗୋଟିଏ ସର୍ତ୍ତ । ଲେମ୍ବୁପାଣି ଗିଲାସେ ନହେଲେ ଅନ୍ତଖିରରେ ଭଲ ଚା ଟିକିଏ ମିଳିବତ ।' ଭଦ୍ରଲୋକ ହସିହସି କହିଲେ, 'ଚା'ତ ଦେଇଥାନ୍ତି । ଏବେ ଦିଇଟା ଯାକ । ଆଗ ସରବତ.....'

'ଉହୁଁ, ସରବେତ ନୁହଁ, ଲେମ୍ବୁଲୁଣ ପାଣି ।'

ଦିହେଁ ଚାଲିଲୁ । ତାଙ୍କ ଘରବାରି ଦେଖି ମନ ପୂରିଗଲା । ରୁଚି ଅଛି ଭଦ୍ରଲୋକଙ୍କର ।

ଘରେ ପହଞ୍ଚି ଡ଼ାକପକେଇଲେ, 'ଉମି, ବୋଉକୁ ଡ଼ାକିଦେ । ତୁ ଲେମ୍ବୁ-ଲୁଣ ପାଣି ଗିଲାସେ ଦେଇ, ଚା' ବସା । ଦି କପ ।'

ଉମି ଆସିଲା । ସଫା ଗିଲାସରେ ଫନ୍ଦକୁ ଟିକିଏ ଛାଡ଼ି ଲେମ୍ବୁପାଣି । ତଳେ ପ୍ଲେଟ୍, ଓପରେ ସାନ କାଚ ଢ଼ାଙ୍କୁଣି । ଗିଲାସର ବାହାରପଟ, କାଚ ଢ଼ାଙ୍କୁଣି ଓ ପ୍ଲେଟ ସବୁ ଶୁଖିଲା । ଝିଅ ଆସିବା ବେଳକୁ ଆମେ ବଗିଚା ବୁଲୁଚୁ । ସେ ମତେ ପ୍ଲେଟ ସମେତ ଲେମ୍ବୁପାଣି ଗିଲାସଟି ବଢ଼େଇଦେଲା । ଗ୍ଲାସ୍ ଉଠେଇ ଢ଼ାଙ୍କୁଣିଟି ଖୋଲି ପ୍ଲେଟରେ ଥୋଇଦେଲି । ମୁଁ ପିଇସାରିବା ଯାଏ ସେ ଅପେକ୍ଷା କଲା । ଖାଲି ଗ୍ଲାସ ନେଇ ଭିତରକୁ ଗଲା ।

ପହିଲି ଦେଖାରେ ବଗିଚାଟି ବଣୁଆ ମନେହେଲା ! ବିଭିନ୍ନ ରକମ ଫୁଲ ଫଳ ଆଉ ଓଷଦ ଗଛ ଫେଣ୍ଡାଫେଣ୍ଡି କରି ଲଗାଯାଇଛି । ମାତ୍ର କିଛି ସମୟପରେ ବଗିଚାଟିର ବିସ୍ମୟକର ବିନ୍ୟାସରେ ଜଣେ ଅଭିଭୂତ ହେଇଯିବ । ଓଳିତଳୁ ସାନ ସାନ ବୁଦାଳିଆ ଗଛ । ପ୍ରତ୍ୟେକଟି ବଢ଼ିବା ପାଇଁ ଯଥେଷ୍ଟ ଜାଗା । ତାପରେ ଆଉଟିକିଏ ଡ଼େଙ୍ଗା ଗଛ ଓ ସବାଶେଷ ପରସ୍ତରେ ଚଉହଦି ବାଡ଼ଯାଏ ବଡ଼ ବଡ଼ ଗଛ । ବାଡ଼ଟି ମଧ୍ୟ ଗଛର । ଚାରିଧାଡ଼ି ଝାଉଁ । ଫୁଲ ଫଳ ଗଛ କେଇପ୍ରକାର ବୋଲି ମନେ ମନେ ହିସାବ କରୁଥିଲି । ଗଣିବାରେ ଶଏ ଟପିଗଲାପରେ ଭଦ୍ରଲୋକଙ୍କ ନିଷ୍ଠା ଆଉ ଉଦ୍ୟମର ପ୍ରଶଂସା ନକରି ରହିପାରିଲି ନାହିଁ । 'ଏ ବଗିଚାଟି କରିବା ପାଇଁ କେତେଦିନ ଲାଗିଛି ?' କହିଲେ, 'ଏଇଟି ଜେଜେ ଆରମ୍ଭ କରିଥିଲେ । ତାଙ୍କ ପରେ ବାପା, ମୁଁ ଆଉ ଏବେ ଉମି । ଆମ ସମସ୍ତଙ୍କ ବୁଦ୍ଧି ବିଚାର ଓ ଶ୍ରମର ଫଳ ଏଇଟି ।'

'ଜେଜି, ବୋଉ ଆଉ ମୁଁ ଗାଧେଇଗଲୁଁ ?' ପ୍ରଶ୍ନରେ ପଛକୁ ଫେରି ଶୁଣିଲି 'ନମସ୍କାର' ଆଉ ଦେଖିଲି ସାକ୍ଷାତ୍ ମା ଅନ୍ନପୂର୍ଣ୍ଣା । ତାଙ୍କ ସ୍ୱାମୀଙ୍କର ଅପ୍ରତିଭ ହସ ଆଉ ସ୍ୱୀକାରୋକ୍ତି, 'ଭୁଲ ହେଇଗଲା' ବି କାନରେ ପଡ଼ିଲା । ଅନ୍ନପୂର୍ଣ୍ଣା ମଧ୍ୟ ହସିପକେଇଲେ, କିନ୍ତୁ କଟାକ୍ଷ କଲେ, 'ସବୁ ପୁରୁଷ ଏକାପରି । ସବୁବେଳେ ମୁଁ, ମୁଁ । ଏଇ ନାଟୁବାବୁଙ୍କୁ ଦେଖୁନା, ବୁଲିତ ଆଇଚନ୍ତି, ସାଙ୍ଗରେ ମାଧୁରୀକି କ'ଣ ଆଣିଲେ ?'

ଅଜଣା ନହେଲେବି ବିକ୍ରମପୁର ମୋ ପାଖରେ ପ୍ରାୟ ଅଚିହ୍ନା । ସେଠି ପୁଣି ଏ ମହିଳା । ଜଣେ ପୂର୍ବତନ ଏମ୍.ଏଲ୍.ଏଙ୍କ ବୋହୂ ଓ ଜଣେ ଗାଉଁଲୀ କର୍ମୀଙ୍କ ସ୍ତ୍ରୀ ! ମତେ ଖାଲି ଜାଣିଚନ୍ତି ନୁହଁ, ମୋ ଘରୋଇ ନାଁ ଆଉ ମୋ ସ୍ତ୍ରୀଙ୍କ ନାଁ ଜାଣିଛନ୍ତି ! ଏଇ ଗୋଟେ ଦିଇଟା ମିନିଟରେ ତାଙ୍କର ଯୋଉ ପରିଚୟ ପାଇ ସାରିଥିଲି ସେଥିରେ କିଛି ପ୍ରଶ୍ନକଲେ ନିଜର ବୋକାମି ଖାଲି ପ୍ରକାଶ କରିବି ସିନା, ସିଧା ଉତ୍ତର କିଛି ପାଇବି ନାହିଁ । ତେଣୁ ନିଜର ବିସ୍ମୟଭାବଟା ଚପେଇ ହସି ହସି ଖାଲି ଅନାଇଁ ରହିଲି ।

'ହଉ ହେଲା । ବହୁତ ଦେଖିଲେ । (ତାଙ୍କୁ ନା ତାଙ୍କ ବଗିଚାକୁ ?) ଘରେ ବସି ଚା ଖାଇଦିଅନ୍ତୁ ତାପରେ ଆମ କାମଦାମ ଦେଖିବେ । ତା'ରି ଭିତରେ ବି ଦୁଃଖ ସୁଖ ହବା । ଆପଣ ଏମିତି

ଢ଼ିମା ଢ଼ିମା ଆଖିରେ ମତେ ଅନାନ୍ତୁ ନାହିଁ, ନାଟୁବାବୁ । ମତେବି ଲାଜମାଡ଼େ (ତମେତ ଖାଲି ଦର୍ଶନ ଦବାପାଇଁ ଆବିର୍ଭୂତା ହେଇଚ । ଆଖି ପୂରେଇ ଦେଖିବେ ସମସ୍ତେ । ଲାଜକୁଆଡ଼ୁ ଆସିବ, ମା ଅଣ୍ଣପୂର୍ଣ୍ଣା ପାଖକୁ ?)

'ଏଇଠି, ବଗିଚାରେ ଚା' ହେଲେ ମନ୍ଦ ହୁଅନ୍ତା ନି' କହି ଘରଆଡ଼େ ମୁହାଇଁଚି, ପତିପତ୍ନୀ ଉଭୟେ, 'କାହିଁକି ହବନି' କହି, 'ଟିକିଏ ଅପେକ୍ଷା କରନ୍ତୁ' କହିଦେଇ ମା'ବାପଝିଅ ମିଶି ଘରଆଡ଼େ ଚାଲିଲେ । ବେତ ଚଉକି ଟେବୁଲ ପାଣିଜାଗା ରେକାବି, ଗିଲାସ ଓଗେର ଆଣି ସଜେଇଦେଲେ । ସମସ୍ତେ ବସିଲୁ । ମା ଜଳଖିଆ ବାଢ଼ିଦେଲେ - ଘିଅ ତିଆରି ସରୁ ଚକୁଳି, ସନ୍ତୁଳା, ମହୁ, କାନ୍ତି । ବଡ଼ ସନ୍ତୋଷରେ ଖାଇଲି । ସେମାନେ ବି ଖାଇଲେ । ଶେଷରେ ଟିକୋଜିଢ଼ଙ୍କା ଟିପଟରୁ ସୁନ୍ଦର ଗ୍ରିନ୍ ଲିଫ୍‌ର ଚା ।

'ସିଗ୍ରେଟ ଛାଡ଼ିଦେଲେଣି ନାଟୁବାବୁ ?' (ହବନି ଆଉ, କିଏ ଇଏ ?)

'ନା' କହି, ସିଗ୍ରେଟ ଲଗେଇଲି । 'ଛାଡ଼ିଦେଲେ ଭଲ କରନ୍ତେ । ମାଧୁରୀ ଖୁସି ହୁଅନ୍ତା ।' ଆଉ ସମ୍ଭାଳି ପାରିଲି ନାହିଁ । କହିଲି, 'ଆପଣ ମତେ ଏମିତି ଅନ୍ଧାରରେ ରଖି ନିଜେ ଆଲୁଅରେ ବୁଲୁଥିବେ । ସହି ହଉନି ।'

'କବିତା ବି ଛାଡ଼ିନାହାନ୍ତି । ମୁଁ ଅଣ୍ଣପୂର୍ଣ୍ଣା । ମାଧୁରୀର ଅନୁ ଅପା ହିସାବରେ ଆପଣଙ୍କର ଦେଢ଼ଶାଶୁ ।'

'କିନ୍ତୁ ସେତ କହୁଥିଲେ, ଆପଣ କୋରାପୁଟରେ ବାହାହେଇଥିଲେ । ଆପଣଙ୍କ ବର ପୁଣି ଆଡ଼ବାଇଆ ! (ଅପ୍ରତିଭ ହସ ହସିଲେ ସ୍ୱାମୀସ୍ତ୍ରୀ) । ଭାରି ଦୁଃଖରେ ଥିଲେ ଆପଣ ।'

'ସେସବୁ ବହୁତ ପୁରୁଣା କଥା । ଇଏ ପାଗଳା ନୁହନ୍ତି । ପହିଲେ ସର୍ବୋଦୟୀ ଓ ପରେ ନକ୍ସାଲ ଥିଲେ । ଦୁଃଖରେ ନୁହଁ, ଡ଼ରରେ ଥିଲି । ମାଧୁରୀ ବାହାଘର ଆଗରୁ ମୋ ବାହାଘର ହେଇଥିଲା । ଆପଣଙ୍କ ବାହାଘରକୁ ଆସିଥିଲି । ପଞ୍ଚୁଗ୍ରାସି କଥା ମନେପଡୁଚି ? (ମନେ ପଡୁନି ! ମାଧୁରୀ ମତେ ଗୁଣ୍ଡାଟା ବଢ଼ାଇ ଦେଉଁ ଦେଉଁ ମୁଁ ଏଡ଼େ ଆଁ କରିଦେଇଥିଲି ଯେ, ସେ ତା ଟ୍ରେନିଂ ଭୁଲି, ମତେ ଶୁଙ୍ଘେଇବ କଣ, ଖୋଇଦେଇଥିଲା - ଆଉ ଯେତେସବୁ ଭାଉଜ, ଅପା, ଶାଳୀ ଓଗେର ରୁଣ୍ଡ ହେଇଥିଲ, ସମତେ ହସରେ ଘର ଫଟେଇ ଥିଲ) । ତା ପରବର୍ଷ ଆମଗାଁ ଯାତ୍ରା ବେଳକୁ ଆପଣମାନଙ୍କ ସାଙ୍ଗରେ ଦେଖା ହେଇଥିଲା । ଆପଣଙ୍କ ନାଁ, ଗାଁ, କାମ, ସିଗ୍ରେଟ, କବିତା-ସବୁକଥା ସେଇଦିନୁ ମତେ ଜଣା । ମାଧୁରୀଟାକୁ ଆଣିଥିଲେ କେତେ ଭଲ ନହେଇଥାନ୍ତା !'

'ଆଉ କେବେ ଆସିଲେ, ଆସିବୁ ।'

'ହଉ, ଉଠନ୍ତୁ । ଆମ କାମ ଦେଖିବେ ପରା ?'

ତିନିଟି ଲମ୍ୱା ଚାଳଘର । ପ୍ରଥମ ଓ ଶେଷଘର ଦୁଇଟିରେ ଲୁଗା ବୁଣା ପାଇଁ ତନ୍ତ ପଡ଼ିଥାଏ । ମଝିଘରଟି, ତାସଣ, କଣ୍ଡା-ତିଆରି, ବାନ୍ଧ-ବନ୍ଧା, ସୂତା ରଙ୍ଗ କରିବା ଆଦି ଲୁଗାବୁଣାର

ଆନୁସଙ୍ଗିକ କାମ ଗୁଡ଼ିକ କରିବା ପାଇଁ ବ୍ୟବହାର କରାଯାଉଥାଏ । ଝାଟିମାଟିର କାନ୍ଥ ଓ ଚାଳଛପର ଘରଗୁଡ଼ିକରେ ବଡ଼ ବଡ଼ ତାଟିଲଗା ଝରକା ଥାଏ । ପ୍ରଚୁର ଆଲୁଅ ଓ ପବନ ଆସୁଥାଏ । ଆଲୁଅ କମିଗଲେ ବା ରାତିରେ କାମ କରିବା ପାଇଁ ବିଜୁଳି-ବତିର ବ୍ୟବସ୍ଥା ମଧ୍ୟ ଥାଏ ।

ତନ୍ତ ପଡ଼ିଥିବା ଘରଦୁଇଟିରେ ମଝିରେ ତିନିହାତ ଛାଡ଼ିଦେଇ ଦୁଇକଡ଼ରେ ତନ୍ତ ପଡ଼ିଥାଏ । ପ୍ରତି ପାଖରେ ଦଶଟି କରି ଘରପିଛା କୋଡ଼ିଏ ହିସାବରେ ମୋଟ ଚାଳିଶଟି ତନ୍ତ ପ୍ରତ୍ୟେକଟିରେ ଲୁଗାବୁଣା ବ୍ୟବସ୍ଥା ହୋଇଥାଏ । ଆମେ ବୁଲିଲାବେଳେ ଦୁଇଟିଯାକ ଘରେ ମାତ୍ର କୋଡ଼ିଏଟି ତନ୍ତ ଚାଲୁଥାଏ । ଲୁଗାବୁଣା ସାଙ୍ଗକୁ ମଝିଘରେ ଆନୁସଙ୍ଗିକ କାମ ମଧ୍ୟ ହେଉଥାଏ । ସବୁକାମ ଝିଅମାନେ କରୁଥାନ୍ତି । ଅନୁଅପା କହିଲେ, 'ଆମର ଏଇ ଗାଁ ଓ ପାଖରେ ଆଉଦୁଇଟି ଗାଁରୁ ଝିଅମାନେ ଆସି ଏଠି କାମ କରୁଚନ୍ତି । ଏହା ତାଙ୍କର ଅବସର ସମୟରେ କାମ । ଘରର ନିତିଦିନିଆ କାମସାରି ଏଠିକୁ ଆସନ୍ତି । ଏଠି ଘଣ୍ଟାକରୁ ତିନିଘଣ୍ଟା କାମକରି ପୁଣି ଘରକୁ ଯାଆନ୍ତି । ଦିନବେଳା ସେମାନଙ୍କର ଫୁରୁସତ କମ୍ । ତେଣୁ ଅଧାଅଧି ତନ୍ତ ବନ୍ଦରୁହେ । ରାତିରେ ସବୁତନ୍ତ ଚାଲେ ।' ଦେଖିଲି ଚାରି ରକମର ବୁଣାବୁଣି ବ୍ୟବସ୍ଥା ହୋଇଛି - ସୂତା, ପାଟ, ମଠା ଓ ଏଣ୍ଡି । ତିରିଶଟି ତନ୍ତରେ ସୂତା, ପାଞ୍ଚଟିରେ ପାଟ, ତିନିଟିରେ ମଠା ଓ ଦୁଇଟିରେ ଏଣ୍ଡିବୁଣାର ବ୍ୟବସ୍ଥା । ସୂତାରେ ଧୋତି, ଶାଢ଼ି, ଚାଦର, ମାଠ, ଗାମୁଛା ଓ ଲୁଙ୍ଗି ଆଦି ବୁଣାଯାଉଥାଏ । ପାଟରେ କେବଳ ଶାଢ଼ି, ମଠାର ଧୋତି, ଶାଢ଼ି, ଚଦର ଓ ବଡ଼ ସାନ ଘୋଡ଼େଇହେଲା ଚାଦର ତିଆରି ହେଲାବେଳକୁ ଏଣ୍ଡିରେ କେବଳ ବଡ଼-ସାନ ଘୋଡ଼ିହେଲା ହେଉଥାଏ । ସବୁ ଦେଖି ଦେଖି ଗଲାବେଳକୁ ଭଲ ଲାଗୁଥାଏ । ଅନୁଅପା ଭଲକାମଟିଏ କରୁଚନ୍ତି । ଘରଚଳାଇବା ପାଇଁ ସ୍ତ୍ରୀଲୋକମାନଙ୍କ ହାତରେ କିଛି ପଇସା ଦେବା ବ୍ୟବସ୍ଥା କରିଛନ୍ତି । ତେବେ ରାତିଦିନ ମିଶି ପ୍ରତିଝିଅ ତିନିଘଣ୍ଟା କାମକଲେ ଓ ଦିନକୁ ହାରାହାରି ବାରଘଣ୍ଟା କାମ ହଉଥିଲେ, ସର୍ବମୋଟ ଦେଢ଼ଶଯାଏ ଲୋକ କାମ କରୁଥିବେ । ଗୋଟେ ଗୋଟେ ଘରୁ ଜଣେ ହେଲେବି ମୋଟ ଦେଢ଼ଶ ଘରପାଇଁ କିଛି ଅଧିକା ଆୟର ବ୍ୟବସ୍ଥା ହୋଇପାରିଛି । କେତେ ପାଉଥିବେ ଜଣକା ? ଅନୁଅପାଙ୍କୁ ପଚାରିଲାରୁ ସେ ପୂରା ହିସାବକଥା ବୁଝାଇଲେ,- ଆମ ଉପସ୍ଥାନ ଓ କାମ ଖାତାରେ ପ୍ରତ୍ୟେକ ପ୍ରତିଦିନ କେତେଘଣ୍ଟା କାମ କରୁଚନ୍ତି ଲେଖାହୁଏ । ପ୍ରତିମାସରେ ଯେତେ ଲୁଗା ଚାଦର ଆଦି ବାହାରେ ତାହାର ହିସାବ ରଖାଯାଏ । ତା ସାଙ୍ଗକୁ ପ୍ରତିମାସ ବିକ୍ରୟ-ଲବ୍ଧ ଅର୍ଥର ହିସାବ ରହେ । ସେ ମାସର ଖର୍ଚ୍ଚ କଟାଗଲାପରେ ଆୟର ପରିମାଣ ଜଣାଯାଏ । ମୋଟ ଆୟର ପାଞ୍ଚଭାଗରୁ ଭାଗେ 'ସାଧାରଣ କୋଠପାଣ୍ଠି'ରେ ଜମାରଖାଯାଏ । ବାକି ଚାରିଭାଗକୁ ମାସକରେ ଯେତେଘଣ୍ଟା କାମ ହୋଇଥାଏ ସେଥିରେ ଭାଗକରି ପ୍ରତି ଘଣ୍ଟାର ପ୍ରାପ୍ୟ ନିର୍ଦ୍ଧାରିତ ହେଲାପରେ ପ୍ରତ୍ୟେକଙ୍କର ମାସିକ ପ୍ରାପ୍ୟ ହିସାବହୁଏ । ସବୁ ମାସରେ ଏକାରକମର ବିକ୍ରି ନଥାଏ । ତେଣୁ ଆୟରେ ତାରତମ୍ୟ ରହେ । ତେବେ ହାରାହାରି ଜଣେ ଘଣ୍ଟାକୁ ପାଞ୍ଚଟଙ୍କା

ଯାଏ ପାଏ । ସେ ମାସକରେ ମୋଟ ଶଏ ବା ଶଏ କୋଡ଼ିଏ ଘଣ୍ଟା କାମକରିଥିଲେ ପାଞ୍ଚଶରୁ ଛ'ଶ ଯାଏ ପାଏ । ଜଣେ ଜଣେ ଅବଶ୍ୟ ଦିନକୁ ଛ' ସାତଘଣ୍ଟା କାମକରିପାରନ୍ତି । ସେଇ ହିସାବରେ ସେମାନେ ମାସକୁ ନଅଶହରୁ ଏଗାରଶହ ଯାଏ ପାଇଥାନ୍ତି । ବିବାହ ଅପେକ୍ଷାରେ ଥିବା ଝିଅମାନେ ସାଧାରଣତଃ ଏପରି ଆୟ କରନ୍ତି । ସେହିପରି ବିଧବା ସ୍ତ୍ରୀଲୋକମାନେ ମଧ୍ୟ ଅଧିକ ସମୟ ଦେଇପାରନ୍ତି ଓ ଅଧିକ ଆୟ କରନ୍ତି ।'

'ଅପା, ଆଜିକାଲିର ଦରଦାମ ଦୃଷ୍ଟିରୁ ଏ ଆୟତ ବେଶୀ ନୁହେଁ !'

'ନା, ନୁହେଁ । ବସିବାଠାରୁ କାଶିବା ଭଲ ହେଲେ, କାଶୁ କାଶୁ କିଛି ରୋଜଗାର କରିପାରିବା ମନ୍ଦନୁହେଁ ନିଶ୍ଚେଁ !'

'ନା, ମନ୍ଦନୁହେଁ, ତେବେ ଆଉଟିକିଏ ଆୟ ବଢ଼ନ୍ତା ନାହିଁ ?'

'ନାଟୁବାବୁ, ଏ ଦେଶ ଏବେ ବିଦେଶୀ ବେପାରୀଙ୍କ ଜାଲରେ ପଡ଼ିଯାଇଛି । ଗାନ୍ଧୀଅମଳ ଗଲାଣି । କାଟି ପିନ୍ଧ, କୁଟି ଖାଅ ଯୁଗ ନାହିଁ । ବଜାରରେ ଆମ ପରମ୍ପରିକ ଲୁଗାର ଚାହିଦା କମିକମି ଯାଉଛି । ହାଣ୍ଡି ମାଠିଆ ବଦଳରେ ସିଲଭର ବାସନକୁସନ ବା କଳଙ୍କିହୀନ ଇସ୍ପାତ ଜିନିଷରେ ବଜାର ଛାଇଗଲାଣି । କଂସାପିତ୍ତଳ ବାସନ ଗଲାଣି । କୁଲା ପାଛିଆ ବଦଳରେ ପ୍ଲାଷ୍ଟିକ ଡ଼ାଲା ! କୁମ୍ଭାର, ଥଟାରି, ବାଉଁଶ କି ବେତବୁଣାଳିଙ୍କ ସାଙ୍ଗକୁ ତନ୍ତୀଏ ବି କାମଧନ୍ଦା ପାଉନାହାନ୍ତି । ତଥାପି ଆମେ ଲାଗିଛୁ ଓ ସାମାନ୍ୟ ହେଲେ ବି କିଛିତ ଆୟ କରୁଛୁ !'

'ତା କରୁଛନ୍ତି ଠିକ୍, ମାତ୍ର ଆଉ ଟିକିଏ ଅଧିକ ହୁଅନ୍ତାନି ?'

'ହବ, ମାତ୍ର ସେଥିପାଇଁ ଏ ପ୍ରଚଳିତ ବିଧିବ୍ୟବସ୍ଥା ବଦଳରେ ଏକ ଲୋକାଭିମୁଖୀ ବ୍ୟବସ୍ଥାର ପ୍ରଚଳନ ......'

'ମାନେ, ........'

'ମାନେ, ଆଉ ଗୋଟେ ବିପ୍ଳବ ।'

'କଏ କରିବ, କେବେ ?'

'କେବେ ଜାଣେନା । ମାତ୍ର ଲୋକେ କରିବେ ଓ ଏହା ହେବହିଁ ହେବ ।'

—ଆପଣଙ୍କ ତୁଣ୍ଡ ସୁତୁଣ୍ଡ ହେଉ । ମାତ୍ର ସେ ଯାଏ ଆଉ ଟିକିଏ ଉପାର୍ଜନ ବଢ଼ାଯାଇ ପାରନ୍ତା ନାହିଁ ?

—ନାଟୁବାବୁ, ଆମେ କେବଳ ଲୁଗାବୁଣା ଆୟ ହିସାବ କରିଛେ । ଲୁଗାବୁଣା ସହିତ ଆଉଗୋଟିଏ ଆୟର ବାଟ ବି ଖୋଲିଛି । ତେବେ ଏ ଆୟ କେବଳ ଏଠାକୁ ଆସି ବୁଣାବୁଣି କରୁଥିବା ସ୍ତ୍ରୀଲୋକଙ୍କର ନୁହେଁ । ସେମାନଙ୍କ ସହ ସମଗ୍ର ପରିବାର ଏକାଠି ଆଉକିଛି ଆୟ କରୁଚନ୍ତି । ପାଟପୋକ, ଏଣ୍ଡିପୋକ ଓ ଟସର-ପୋକ ପାଳି ପାଟ, ଏଣ୍ଡି ଓ ମଠାର ମୂଳ କଞ୍ଚାମାଲ ଯୋଗାଡ଼ କରାଯାଉଛି । ସେହିପରି କପାଚାଷ ମଧ୍ୟ ହେଉଛି । କପା, ପାଟ-ମଠା-ଏଣ୍ଡି ଖୋସା

ବଦଳରେ ସୂତା, ପାଟ-ମଠା-ଏଣ୍ଡି ସୂତା ଅଣାଯାଉଛି । ଏ ଗୁଡ଼ିକ କେବଳ କିଣୁଥିଲେ ଆମକୁ ପ୍ରାୟ ଦୁଇଗୁଣ ଖର୍ଚ୍ଚ ପଡୁଥାନ୍ତା । ସେ ଲାଭତକ ମିଶିଲେ ଗାଁର ପ୍ରାୟ ପ୍ରତ୍ୟେକ ପରିବାର ମାସିକ ଆଉ ହଜାରେ ଯାଏ ପାଉଚନ୍ତି । ଏହାବାଦେ ପାରମ୍ପରିକ ଧାନ ଓ ଅନ୍ୟାନ୍ୟ ଫସଲର ଆୟବି ଅଛି । ଆମ କାମଯୋଗୁ ପ୍ରତି ପରିବାର ମାସିକ ଅଧିକ ଦୁଇ ହଜାର ଯାଏ ଆୟ କରିପାରୁଛନ୍ତି । ଗୋଟେ ବିଚାରରେ ଏହା ବେଶୀ ନୁହେଁ ସତ, ମାତ୍ର ଅନ୍ୟବିଚାରରେ ଏହା ନିହାତି କମ୍ ମଧ ନୁହେଁ । ନିକଟରେ ଆମର କିଛି ପିଲା ପାଟ-ମଠା-ଏଣ୍ଡି ସୂତା କାଟିବା ଶିଖି ଫେରିଆସିଲେ, ଆମେ ଖୋସା ନ ବିକି ସୂତା ଆମଦାନି କରିବୁ ଓ ଆମର ପ୍ରୟୋଜନ ମେଣ୍ଟିଲାପରେ ଉଦ୍‌ବୃତ୍ତ ସୂତା ବିକି ଆଉ କିଛି ଆୟ ବଢ଼େଇପାରିବୁ ।

– ଅପା, ଆପଣଙ୍କ ବିବରଣୀ ପରଷା ଦେଖିଲାପରେ ଭଲ ଖାଦ୍ୟପରଷୁଥିବା ମା ମାଉସୀ ମନେ ପଡୁଛନ୍ତି । ଏକାବେଳେ ଗୁଡ଼ାଏ ବାଢ଼ିଦେଇ ନଷ୍ଟହବା ସୁଯୋଗ ନଦେଇ ଅଳ୍ପ ଅଳ୍ପ ବାଢ଼ିବା ପରିଷି ପେଟପୂରା ଖୋଇ ସମସ୍ତଙ୍କୁ ସନ୍ତୁଷ୍ଟ କରିପାରିବା ଗୋଟିଏ ବିଶେଷ କଳା ଓ ଆପଣ ସେଇ କଳାରେ ନିପୁଣା !

ଅନୁଅପାଙ୍କ ସ୍ୱାମୀ ମୋ କଥାରେ ହୋ ହୋ ହେଇ ହସି ଉଠି କହିଲେ, 'ନାଟୁବାବୁ, ବଳେ ପଶି ଖାଇବା ନିମନ୍ତ୍ରଣ ଆଦାୟ କରୁନାହାନ୍ତିତ ?'

'ନାଇଁ ଆଜ୍ଞା । ଧରିନେଇଛି ଯେ ଆଜି ଦିପହରେ ଭୋଜନଟା ଖେତପଡ଼ିଆରେ । ତେବେ ଏଠି ମୁଠେ ଖାଇବା ହେବ । ଅବଶ୍ୟ ଆପଣଙ୍କର ଆପତ୍ତି ନଥିଲେ । ତାପରେ ତା ପୂର୍ବରୁ ଟିକେ ବୁଲାବୁଲି କରି ନ ଆସିଲେ ପେଟରେ ଜାଗାହବ ନାହି ।'

'ତେଣୁ ଲୋକଙ୍କ ଆଗ୍ରହ ଓ ଆମର ଇଚ୍ଛା ସତ୍ତ୍ୱେ ଆମେ କାମ ବଢ଼େଇ ପାରୁନାହୁଁ । ଜଣେଇଲେ ଅନୁଅପା । ଲକ୍ଷ୍ୟ କରୁଥିଲି, ଅନୁଅପା ଆସିଲାପରେ ସେହିଁ କଥାବାର୍ତ୍ତା କରୁଚନ୍ତି । ତାଙ୍କ ସ୍ୱାମୀ ବା ଝିଅ ପ୍ରାୟ ଚୁପ୍ । ମନେହେଲା ଏଯାଏ ଭଦ୍ରଲୋକଙ୍କ ନାଆଁ ଜାଣିନାହିଁ । ଏବେ ପଚାରିବାକୁ ମାଡ଼ିପଡ଼ିଲା । ନାଁଟା ବି ଏଠାର ଆଉସବୁ କଥାପରି ଆପେ ଆପେ କେତେବେଳେ ବାହାରିପଡ଼ିବ ବୋଲି ଅପେକ୍ଷା କଲି ।

'ଶିବଭାଇ କୁଆଡ଼େ ଗଲ' କହି ହେଡ୍‌ମାଷ୍ଟ୍ରବାବୁ ଲସରପସର ହେଇ ପଶିଆସିଲେ । ସେ ଆମପାଖରେ ପହଞ୍ଚିବା ଭିତରେ ଶିବବାବୁ କହିଲେ, 'ଆମକୁ ବହୁତ ସାହାଯ୍ୟ କରୁଚନ୍ତି । ବଡ଼ ନିରୀହ ଲୋକ ବିଚରା ! ଆମଛଡ଼ା କେହି ତାଙ୍କୁ ମାନନ୍ତି ନାହିଁ । ତାଙ୍କରି ଆଗ୍ରହରେ ଆଜି ତେଣେ ଯାଇଥିଲି ।' ହେଡ୍‌ମାଷ୍ଟ୍ରେ ପାଖରେ ପହଞ୍ଚିଲାପରେ ପଚାରିଲି, 'କ'ଣ ସାର୍ ସ୍ପୋର୍ଟସ ଆରମ୍ଭ ହେବକି ?'

'ଆଜ୍ଞା ।'

ଶିବ କହିଲେ, 'ଆପଣଙ୍କ ସାଙ୍ଗରେ ଆଉକିଛି ସମୟ କଟେଇବା ପାଇଁ ଇଛାଥିଲା । ମାତ୍ର ମୁଁ

ସ୍ପୋର୍ଟସରେ ରହିପାରିବିନି । ଅନ୍ୟକାମ ଅଛି ।'

'ଦେଖନ୍ତୁ, ନିଜେ କହିଲେ ମୋ ସାଙ୍ଗରେ କିଛି ସମୟ କଟାଇବାକୁ ମନ । ମୋ କାମତ ଉଦ୍‌ଘାଟନ । ସେଥିରେ କେତେ ବା ସମୟ ଲାଗିବ ? ଆପଣ ଅଧଘଣ୍ଟାଏ ଭିତରେ ନିଜକାମ ସାରି ବ୍ଲକ୍‌ପଡ଼ିଆକୁ ଆସନ୍ତୁ । ତାହେଲେ ମୁଁ ବି ପୁଣିଥରେ ଏଠିକି ଆସିବାକୁ ସୁବିଧା ପାଇବି ।' ହେଡ୍‌ମାଷ୍ଟ୍ରେ ଓ ମୁଁ ବ୍ଲକ ପଡ଼ିଆ ଆଡ଼େ ଯାଉଯାଉ ତାଙ୍କ ସହ କଥା ବାର୍ତ୍ତାରୁ ବୁଝିଲି ଯେ ଭଦ୍ରଲୋକ ବାହା ହେଇ ନାହାନ୍ତି । ନିଜେ ବହୁତ ପଢ଼ାପଢ଼ି କରନ୍ତି । ଅବସର ସମୟରେ ଶିବ ବାବୁଙ୍କ ସହ ଆଳାପ ଆଲୋଚନା କରନ୍ତି । ସ୍କୁଲକାମ ବାହାରେ ଆଉ ଗୋଟିଏ ବଡ଼ କାମ କରୁଚନ୍ତି । ଗାଁର ଆଗ୍ରହୀ ମହିଳାମାନଙ୍କ ପାଇଁ ଏକ ନୈଶବିଦ୍ୟାଳୟ ବସେଇଚନ୍ତି । ସେଠି ପାଳି କରି ସେ, ଶିବ, ଅଣ୍ଣପୂର୍ଣ୍ଣା, ଉମି ଓ ଉମିର ବର ଲକ୍ଷ୍ମଣ ପଢ଼ାପଢ଼ି କରାନ୍ତି । ଉମିର ବର ଇରିଗେସନ ଇଂଜିନିୟର । ଚାକିରି ଛାଡ଼ିଦେଇ ଶଶୁର ଶାଶୁଙ୍କ ସାଙ୍ଗରେ ସେମାନଙ୍କ କାମରେ ସାହାଯ୍ୟ କରିବାଛଡ଼ା ଗାଁରେ ଜଳସଂରକ୍ଷଣ ଓ ଜଳସେଚନ ପାଇଁ ସମୟ ଦିଏ । ଆଉଗୋଟେ କାମ, ଜନଶିକ୍ଷା । ଜନଶିକ୍ଷାକାର୍ଯ୍ୟରେ ଆଗ୍ରହ ଯୋଗୁଁ ତିରିକଣା ଯାଇଚି । ଉର୍ମିଳା ସମାଜ ବିଜ୍ଞାନରେ ଦିଲ୍ଲୀରୁ ଡ଼କ୍ଟରେଟ କରିଚି । ଘରକାମ, ଲୁଗାବୁଣା, ନୈଶବିଦ୍ୟାଳୟ ସାଙ୍ଗକୁ ଏମାନଙ୍କ କାମର ଫଳାଫଳ କ'ଣ ହଉଚି ତାର ମୂଲ୍ୟାୟନ କରେ । ଓଡ଼ିଆ ଓ ଇଂରାଜୀରେ ଚମତ୍କାର ଲେଖେ । ମାତ୍ର ଏମାନେ କେହି ପ୍ରଚାର ପକ୍ଷପାତି ନୁହନ୍ତି । ଲକ୍ଷ୍ମଣ ଅନାଥ । ପିଲାଦିନୁ ଶିବଙ୍କ ପରିବାର ଭୁକ୍ତ । ଏବେ ପାରିବାରିକ ସଂପର୍କଟି ସାମାଜିକ ସ୍ୱୀକୃତି ପାଇଛି । ଶିବଙ୍କୁ ଓ ହେଡ୍‌ମାଷ୍ଟ୍ରଙ୍କୁ ପହିଲୁ ଟିକିଏ ହେୟଦୃଷ୍ଟିରେ ଦେଖିଥିବାରୁ ଲଜ୍ଜିତ ହଉଥିଲି । ଏପରି ନୀରବ ନିରଳସ ଓ ସଚ୍ଚୋଟ ପରିବାର ଓ ଲୋକ ଏବେବି ଏ ଦେଶରେ ଅଛନ୍ତି ଜାଣି ବିସ୍ମିତବି ହଉଥିଲି ।

ସ୍ପୋର୍ଟ୍‌ସ୍ । ବାଲ୍ଟି ଓ ମଗ-ଆଦି ସଫା କରେଇବାରେ ମୋ ଅଖାଡୁଆପଣ ଜଣାପଡ଼ି ବହୁତ ସୁବିଧାହେଲା । ଆଗରୁ ବଜା ଯାଉଥିବା କୁତ୍ସିତ କ୍ଷୀରା ବନ୍ଦ ହେଇଥିଲା । ପିଲାମାନେ ଟିକେ ନରମି ଯାଇଥାନ୍ତି । ପଡ଼ିଆରେ ଖେଳକୁଦ ପାଇଁ ଜମିଥିବା ପ୍ରତିଯୋଗୀଙ୍କ ସଂଖ୍ୟା କୋଡ଼ିଏ ପଚିଶ । ଖେଳ ପରିଚାଳକ ଆଠଦଶ ଜଣ । ଦେଖଣାହାରି ଆଉ ପଚାଶ ଷାଠିଏ । ମତେ ସେକ୍ରେଟେରିବାବୁ ପଚାରିଲେ ଯେ ପ୍ରତିଯୋଗିତା ଉଦ୍‌ଘାଟନ କେମିତି ହବ ? କହିଲି, ଭାଷଣରେ ନୁହେଁ । ଖେଳରେ ପ୍ରଥମ ଆଇଟମ୍‌ରେ ଅଂଶ ନେଇ ଉଦ୍‌ଘାଟନ କରିବି । ସେ କହିଲେ, ସାର୍ ପ୍ରଥମେ ପୁଅଙ୍କର ଶଏ ମିଟର ଦଉଡ଼ ତାପରେ ଝିଅଙ୍କର ।'

'ଠିକ୍ ଅଛି, ଦିଇଟା ଯାକରେ ଭାଗନେବି ।'

'ସାର୍ ଘୋଷଣା କରିଦେବି ?' 'ନିଶ୍ଚେ । ତେବେ ତମ ଘୋଷଣାପରେ ପିଲାମାନେ ଏକାଠିହେଇ ନିଜନିଜର ନିର୍ଦ୍ଦିଷ୍ଟ ଟ୍ରାକ୍‌କୁ ଯିବା ଭିତରେ, ଦି ଚାରିପଦ କହିବି । ସେକ୍ରେଟେରି ଖୁସିଥିଲା । କ୍ରିକେଟଖେଳର ଦେଖଣାହାରିଏ ଏ ଆଡ଼େ ମୋହିଁଲେ । ଗାଁ ଆଡୁ ବି କିଛି ଲୋକ ମଜାଦେଖିବା ପାଇଁ ଆସିଲେ । ମୋ କଥା କହିଲି,

'ଏଠିକି ଆସି ମୁଁ ବହୁତ ଖୁସି । ଆମ ଜୀବନରେ ଖୋଲାମନରେ ଖୁସିହବାପାଇଁ ବହୁତ କମ୍ ସୁବିଧା ଅଛି । ଆମେ ହୁଏତ ଭାରୀ ଗମ୍ଭୀର ନହେଲେ ମାତ୍ରାତିରିକ୍ତ ଭାବରେ ହେରସା । ଏ ଖେଳକୁଦ ଦେଇ ଆମେ ଟିକିଏ ଖୁସି ହେଇପାରିଲେ ଭଲ ହବ । ମୁଁ ଜାଣୁଚି ଏଠି ଆଜି ଭଲ ଖାଇବା ବ୍ୟବସ୍ଥା ହେଇଚି । ଆପଣମାନେ ଜନ୍ତାଳ ଜାଣନ୍ତି । ଜନ୍ତାଳରେ ସମସ୍ତେ ଭାଗନିଅନ୍ତି, ନିମନ୍ତ୍ରଣ ନଥାଏ । ମୁଁ ନିମନ୍ତ୍ରିତ । ନିମନ୍ତ୍ରିତ ଲୋକଟିଏ ମଧ ନିମନ୍ତ୍ରଣ କରିଥିବା ଲୋକଙ୍କର ଆପଣାର ହେଇଗଲେ ଅନ୍ୟମାନଙ୍କୁ ନିମନ୍ତ୍ରଣ କରିପାରେ । ମୁଁ ନିଜକୁ ଆୟୋଜକ ମାନଙ୍କ ଭିତରୁ ଜଣେ ବୋଲି ପ୍ରମାଣ କରିସାରିଛି । ଆୟୋଜକମାନଙ୍କ ତରଫରୁ ସମସ୍ତିଙ୍କି ନିମନ୍ତ୍ରଣ କରୁଚି । ଯାହାଗଣ୍ଡେ ହେଇଛି ଖେଳ ଶେଷରେ ସମସ୍ତେ ଏକାଠି ଖାଇବା ।' ତାଳି ଓ ଉଲ୍ଲାସରବ ଭିତରେ ବସି ପଡ଼ିଲି । ମୋ ଝୁଲାରୁ ଧୋତି ବାହାର କରି, ପାଇକଛା ମାରି ପିନ୍ଧିଲି । ପେଣ୍ଟ ଜାମା ଜୋତା ରହିଲା । ପାଇକଛା ଓ ଗେଞ୍ଜି ସାଜରେ ଟ୍ରାକଆଡ଼େ ଆଗେଇଲି ।

ପ୍ରଥମ ଦୁଇଟି ପ୍ରତିଯୋଗିତାରେ ଭାଗନେଲି । ପାରୁପର୍ଯ୍ୟନ୍ତ ଜୋରରେ ଦଉଡ଼ି ମଧ ଶେଷରେ ରହିଲି । କିନ୍ତୁ ଖେଳ କୁଦପାଇଁ ଗୋଟେ ନୂଆ ଉତ୍ସାହ ଆସିଯାଇଥିଲା । ମୋ ଜାଗାକୁ ଫେରି ପୁଣି ଭଦ୍ରଲୋକ ସାଜ ଘିନିସାରିଚି, ଶିବ ପହଂଚିଲେ । ହେଡ୍‌ମାଷ୍ଟ୍ରେ ତାଙ୍କ ସାଙ୍ଗେ କଥାହେଲେ, ମତେ ନ ଶୁଭିବାପରି । ଶିବ ଡ଼ାକିଲେ, 'ଏଠି ଆଉ କାଇଁକି ? ଆସନ୍ତୁ ଗୋଟେ ଜାଗା ଦେଖି ଆସିବା' ।

'ଦୂରହେଲେ ଗାଡ଼ିନେବା ।'

'ନାଇଁ ଦୂର ନୁହେଁ, ଦୁଇ କିଲୋମିଟର । ଆପଣ ଯେମିତି ଦୌଡ଼ିଚନ୍ତି, ଏତକ ଯିବାଆସିବା କଲେ, ଭଲ ହବ, ନହେଲେ କାଲିକୁ ଗୋଡ଼ହାତ ଉଠେଇ ପାରିବେ ନାହିଁ ।'

'ଡ଼ାକ୍ତର ?'

'ନା, ମାସିଉର୍ । ମାଲିସରେ ବଡ଼ ଦକ୍ଷ ଆମେମାନେ, ରୋଗ ଭଲ କରିଦେଇ ପାରୁଁ ।' ହେଡ଼ମାଷ୍ଟ୍ରେଙ୍କୁ କହିଦେଇ ବାହାରିଗଲୁ ।

ଦୁଇ କିଲୋମିଟରରୁ ଗୋଟେ କିଲୋମିଟର ସଡ଼କ । ତାପରେ ଡ଼ାହାଣ ହାତି ମୋଡ଼ିଲେ ଗୋଟେ ପାଦଚଲା ରାସ୍ତା । ଦିକ୍କଡ଼ରେ ବୁଦୁବୁଦୁକିଆ ବଣ । ମଝିରେ ମଝିରେ ଶାଳ, ମହୁଲ, ପିଆଶାଳ, କେନ୍ଦୁ, କୋଚିଲା, ବାହାଡ଼ା ଗଛ । ବୁଲ୍‌ଡୋଜରରେ ସିଆରକଟାହେଇ ଚାରିପାଞ୍ଚହାତ ଓସାରର ଖାଇ ଓ ଖାଲକୁ ଲାଗି ସେଇମିତି ଚାରି ପାଞ୍ଚହାତ ଓସାରର ହିଡ଼ । ହିଡ଼ କରରେ ଖାଲପଟକୁ ଫୁଟେ ଦିଫୁଟ ଉଚ୍ଚ ଅନେକଗଛ । ମାଟି କ୍ରମଶଃ ଉପରଆଡ଼କୁ ଡ଼ାଲୁ । ଖାଲଢ଼ିପ ଏକାଠିହେଇ ଦିଇଟା ପର୍ଯ୍ୟାୟରେ ପାହାଚ ପାହାଚ ହେଇ ଉପରକୁ ଉଠିଯାଇଛି । ପ୍ରଥମେ ଉଠାଣି, ସେଠୁ ଗଡ଼ାଣି ସେଠୁ ଗୋଟେ ସରୁ ଷୋହଳ, ମାନେ ଦି ଢ଼େଉ ମଝିପରି, ତାପରେ ପୁଣି ଉଠାଣି ପଚାରିଲି କଣ ସରକାରୀ ପ୍ଲାଣ୍ଟେସନ ?'

'ନାଁ, ଲକ୍ଷ୍ମଣ ବାବୁଙ୍କ ଜଳସଂରକ୍ଷଣ ଓ ଜଙ୍ଗଲ ସୃଷ୍ଟି ଉଦ୍ୟମ । ଆସନ୍ତା ବର୍ଷକୁ ଗଛସବୁ ପାଞ୍ଚସାତ ଫୁଟ ଉଚ୍ଚ ହେଇଯିବ ବୋଲି ଘୋଷଣା କରିସାରିଛନ୍ତି । ଲୋକେ ପୂରା ବିଶ୍ୱାସ ନକଲେବି ଆସନ୍ତା ବାହୁଡ଼ା ଦଶମୀକୁ ଅପେକ୍ଷା କରିଚନ୍ତି । ସେଇଦିନ ବର୍ଷେ ପୂରିବ ।'

ସରକାରୀ ଅନୁମତି ମିଳିଲା ?' 'ଜମିଟା ପଞ୍ଚାୟତର । ପଞ୍ଚାୟତ ପାଞ୍ଚବର୍ଷପାଇଁ ଲକ୍ଷ୍ମଣ ବାବୁଙ୍କୁ ଦାୟିତ୍ୱ ଦେଇଛନ୍ତି । ସେ ସରୁଆ ଶୁଖିଲା ପାଣିଧାରଟା ଦେଖୁଛନ୍ତି ? ବିଶ୍ୱାସ କରି ହଉନି, ଏଇ ସେଦିନ ଯାଏ, ମାନେ ମୋ ପିଲାଦିନେ ସେଥିରେ ସବୁବେଳେ ପାଣି ରହୁଥିଲା । ଉପରମୁଣ୍ଡରେ ଦି'ପାହାଡ଼ ମଝି ଖୋଲରେ ଝରଣା ଥିଲା । ଜୋରର ଦିପଟୁ ମଧ ଅନେକ କୁନିକୁନିଝର ବାହାରୁଥିଲେ । କି ପରିଷ୍କାର ମିଠା ପାଣି ! ଲକ୍ଷ୍ମଣବାବୁ କହିଛନ୍ତି ପାଞ୍ଚ ସାତ ବର୍ଷରେ ଏ ପାହାଡ଼ ତଳି ବଣ ଓ ପାହାଡ଼ ଓପର ବଣ ବଢ଼ିଗଲେ ପୁଣି ସୁନା ଜୋରରେ ସବୁଦିନେ ପାଣି ରହିବ । ଜମି ବାଲିଚର ହବନି । ଜନ୍ତୁଜନ୍ତା, ଚଢ଼େଇ ପ୍ରଜାପତି ମହୁମାଛି ଫେରି ଆସିବେ । ଗାଁ କୂଅଗୁଡ଼ିକରେ ଆଗଭଳି ଖରାଦିନେ ପାଣି ରହିବ ।

'ସେଠୁ ଜଙ୍ଗଲ ବିଭାଗ ହାତକୁ ନେବେ, ଠିକାଦାର ଗଛ କାଟିବେ, ଲୋକେବି କାଠ ଚୋରି କରିବେ ପୁଣି ସବୁ ଉଜୁଡ଼ି ଯିବ ।'

'ଦେଖାଯିବ ।'

'ପାହାଡ଼ର ପଶ୍ଚିମ ନାସିତଳେ ପୁଳାଏ ବଡ଼ ବଡ଼ ଗଛ ଓ ସବୁ ଗଛକୁ ଟପି ଆଉଗୋଟେ ଡେଙ୍ଗାଗଛ ଦେଖାଗଲା । ବିଶାଳଛତ୍ର ମୁଣ୍ଡାଳିଗଛଟିଏ । ଧୂଆଁ ଉଠୁଥିଲା । ପଚାରିବା ଆଗରୁ ବିନୋଦବାବୁ "ସେଇଠିକୁ ଯାଉଛେ ବୋଲି ଜଣେଇଲେ । ବେଶୀ ନୁହଁ, ମାତ୍ର ଦଶବାରଟା ବଡ଼ ବଡ଼ ଝଙ୍କା ଆମ୍ବଗଛ । ଭିତରେ ଅରାଏ ସଫାଜାଗାରେ କୁଡ଼ିଆଟିଏ । କୁଡ଼ିଆ ସାମ୍ନାରେ ଗୋଟାଏ ଡେ଼ଙ୍ଗା ଆଉ ମୋଟା ଗଛ ଆମ୍ବଗଛ ଗୁଡ଼ାଙ୍କ ମଥାନଟପି ଉପରକୁ ଉଠିଯାଇଛି, ତଳୁ ଚାହିଁଲେ ଠେକା ଖସିପଡ଼ିବ । ପଚାରିଲି, 'କି ଗଛ ?'

'କେହି ଜାଣନ୍ତିନି, ଏ ଅଂଚଳରେ ଏପରି ଗଛ ଆଉ ନାହିଁ । ଗଛ ନାଁ, ଅଂଚଳ ଇତ୍ୟାଦି ଜାଣିବାପାଇଁ । ଲକ୍ଷ୍ମଣବାବୁ ଗବେଷଣା ଚଲେଇଚନ୍ତି, ହଠାତ୍ ମୋ ଭିତରେ କ'ଣ ଘଟିଗଲା । ଦଉଡ଼ିଯାଇ ବୃକ୍ଷରାଜଙ୍କୁ କୁଣ୍ଢେଇ ପକେଇଲି । ତାଙ୍କ ଗଣ୍ଡିରେ ମୁଣ୍ଡ ଲଗେଇଲିି । ମୋ ଅଜାଣତରେ ଆଖିରୁ ଧାର ଧାର ଲୁହ ଗଡ଼ି ପଡ଼ିଲା । ବୃକ୍ଷରାଜଙ୍କ ମୁଣ୍ଡରେ ପବନ ବାଜି ପତ୍ରମାନେ ଗୀତ ଗାଇଲେ । ଆମ୍ବଗଛ ପତ୍ର ଗୁଡ଼ିକ ଖଡ଼ଖଡ଼ ଖୁଡ଼ଖାଡ଼ ହେଇ ତାଳଦେଲେ । କେତୋଟି ପତ୍ର ଖସିପଡ଼ିଲେ । ମୁଁ ଗୋଟିଏ ପତ୍ର ଗୋଟେଇ ଆଣି ମୁଣ୍ଡରେ ଛୁଆଁଇ ଛାତି ପକେଟରେ ରଖିଲି ।

'ଆସ, ପାଗଳା ବାବା ! ବୃକ୍ଷରାଜର ଆତ୍ମା ପୁରୁଷ ବା 'ବୃକ୍ଷକେ'ଙ୍କ ଡ଼ୋର ଲାଗିବା ଦ୍ୱିତୀୟଥର ପାଇଁ ପ୍ରତ୍ୟକ୍ଷ କଲି ।' ପହିଲୁ ଠଉର କରିପାରିଲିନି କିଏ କୋଉଠୁ କହୁଚନ୍ତି ? ବୃକ୍ଷରାଜଙ୍କ

ଗଣ୍ଠିର ଆରପଟରୁ ଜଣେ ବାହାରିଆସିଲେ । ବାମନ । ଦିହାତ ଉଚ ହୁଅନ୍ତି ନ ହୁଅନ୍ତି । ମାଟିଛୁଆଁ ଦାଢ଼ି । ମୁଣ୍ଡରେ ଗୋଛାଏ ଗୁଡ଼ାହୋଇଥିବା ଜଟା, ଗୋଟିଏ ଅତିକାୟ ଝାମ୍ପିପରି ଶୋଭା ପାଉଥିଲା ।

'ନମସ୍କାର ବାବା । ଅଣ୍ଡପୂର୍ଣ୍ଣାଙ୍କ ସାନଭଉଣୀ ମାଧୁରୀଙ୍କ ବର ଇଏ । ହାକିମ । ଖେଳ ଉଦ୍‌ଘାଟନ କରିବାକୁ ଆସି ଗାଁରେ ଆମପିଲା ଦିନର ଜନ୍ତାଳ ମଉଛବପରି ଆନନ୍ଦର ବନ୍ୟା ଛୁଟେଇଦେଇଚନ୍ତି । କାଳେ ନିଜେ ଭାସିଯିବେ ବୋଲି ଏଠିକି ଆଣିଲି ଯେ, ଦେଖୁଛି ଆପଣ ନ ସମ୍ଭାଳିଲେ, ଭାବ ସମୁଦ୍ରରେ ବୁଡ଼ିଯିବେ ଏଠି । ସେଠୁ ମତେ କହିଲେ, 'ଭାଇ, ଏଇ ବାମନ ବାବା । ଏଇଠି ପତରଶୁଣୀଙ୍କ ପାଖରେ କୋଡ଼ିଏବର୍ଷ ହେଲା ଅଛନ୍ତି । ସ୍ୱପ୍ନାଦେଶ ପାଇଥିଲେ ।'

ବାମନବାବାଙ୍କୁ ନମସ୍କାର କରିହେବନି ! ଦଣ୍ଡବତ କରିବାକୁ ଯାଉଚି, ବାବା ଧରି ପକେଇଲେ, 'ନା, ବୃକ୍ଷକଙ୍କ ସୋଦରଙ୍କୁ ପ୍ରଣାମ ମନା ! ମୁଣ୍ଡ ଭାଙ୍ଗିବ ସିନା ନଇଁବ ନାହିଁ । ଆପଣଙ୍କୁ କୁଡ଼ିଆଭିତରକୁ ଡ଼ାକିବି ନାହିଁ । ଏଇ ଶିବଙ୍କୁ ଗୋଟେ ଜିନିଷ ଦବାକୁ ଅଛି ଯେ, ତାଙ୍କୁ ନେଇଯାଉଚି । ଆପଣ ମନଖୁସି ଯାହା ଚାହାନ୍ତି, କରନ୍ତୁ ।' ସେମାନେ କୁଡ଼ିଆ ଆଡ଼େ ଚାଲିଲେ । ମୁଁ ବୃକ୍ଷକଙ୍କ ଅପରପାଶ୍ୱକୁ ମୁହାଁଇଲି । ପତରଶୁଣୀ ପଥର ଓ ପତର ଗଦାଭିତରେ ଲୁଚିଯିବାପରି ମୁଣ୍ଡଟିଏ । ବଡ଼ କମନୀୟ ମୂର୍ତ୍ତି । ଅପାର ଶକ୍ତିର ଅଧିକାରିଣୀ ସଂପୂର୍ଣ୍ଣ ଉଦାସୀନା ହେଲେହିଁ ଏପରି ଦେଖାଯିବେ । ଶିବଙ୍କୁ ଭିକ୍ଷାଥାଳ ବଢ଼େଇବା ଦେଖି ପାର୍ବତୀ ଯେପରି ଦିଶୁଥିଲେ ବୋଲି ପରଶୁରାମେଶ୍ୱର ମନ୍ଦିରର ଦକ୍ଷିଣ ପଟ ରାହାଶିଖରରେ ଓଡ଼ିଆଶିଳ୍ପୀ ଦେଖାଇଥିଲେ, ସେହିପରି । ମା ଅପର୍ଣ୍ଣା ! ଅନ୍ନପୂର୍ଣ୍ଣା !! ଜଗଦୀଶ୍ୱରୀ !!! ଏଇମିତି ପତରଶୁଣୀହେଇ ରହିଥାଅ ମା' କହି ସାଷ୍ଟାଙ୍ଗ ପ୍ରଣିପାତ ହେଲି ।

'ହେଲା ବାବା । ଉଠନ୍ତୁ । ଏଠିତ ପ୍ରସାଦ ନାହିଁ । ଏଇ ପାଣିଟିକିଏ ନିଅନ୍ତୁ,' କହି ବାମନବାବା ସାନ ଆବୁଖୁରାଟିଏ ବଢ଼େଇଦେଲେ । ଟେକିଧରି ପିଇଦେଇ କହିଲି, 'ଏଠିତ ସବୁ ପ୍ରସାଦ । ଏ ଗଛ, ଏ ତୋଟା, ଏ ପାଣି, ଆପଣ -ସଭିଏଁତ କଣିକାଏ କଣିକାଏ ପ୍ରସାଦ । ନିଜେ ବୃକ୍ଷକ ମତେ ପ୍ରସାଦ ଦେଇ ସାରିଛନ୍ତି କହି ପକେଟରୁ ପତ୍ରଟି କାଢ଼ି ଦେଖେଇ ପୁଣି ରଖିଦେଲି ।'

'ହଉ । ଚାଲନ୍ତୁ ଫେରିବା' କହି ଶିବବାବୁ ଆଗେଇଲେ । ପୁଣିଥରେ ବୃକ୍ଷକଙ୍କୁ ଆଲିଙ୍ଗନ କରି, ବାବାଙ୍କ ଉଦ୍ଦେଶ୍ୟରେ ମୁଣ୍ଡ ସାମାନ୍ୟ ନୁଆଁଇ ଶିବ ବାବୁଙ୍କ ପଛେ ପଛେ ଚାଲିଲି । କିମିତି ଏକ ଆଚ୍ଛନ୍ନ ଭାବ । ଶିବବାବୁ ମଧ୍ୟ ଚୁପ୍ ।

ତା'ପରେ ଜନ୍ତାଳରେ ଭାଗନେଇ, ତିରିକଣା ଯାତ୍ରା । ଯିବାଆଗରୁ ଅଣ୍ଡପୂର୍ଣ୍ଣାଙ୍କୁ ଦେଖାକରିବାକୁ ଭାବୁଥିଲି । ମାତ୍ର ଶିବବାବୁ ଜଣେଇଲେ ଯେ ସେ ଗାଁ ଆଡ଼େ ଯାଇଥିବେ । ଗାଡ଼ିରେ ବସିଲାପରେ ହେଡ୍‌ମାଷ୍ଟ୍ରବାବୁ କହିଲେ, 'ଆପଣ ଅସମ୍ଭବ କିମିଆଁ କଲେ ଆଜି । ଶିବବାବୁ ପ୍ରଥମଥରପାଇଁ ଆଜି ଘର ବାହାରେ ଖାଇଲେ ।' ତା ଠିକ୍ ଜାଣେନା । ତେବେ

ତାଙ୍କଘରେ ମୁଠାଏ ଖାଇବିବୋଲି ବିଚାରିଥିଲି ଯେ ସେତକ ହେଇପାରିଲାନି । ଶିବବାବୁ ବୋଧହୁଏ ଗୁଣୀ କରିଦେଲେ । ଶିବବାବୁ ହସୁଥିଲେ । ପିଲାଏ ଘେରିଥିଲେ । ସମସ୍ତିଙ୍କି ବିଦାୟ ଅଭିବାଦନ ଜଣେଇ ବାହାରିଆସିଲି ।

ସଭା ସମୟ ଆଗରୁ ଚିରିକଶାରେ ପହଞ୍ଚିଗଲି । ବୁଢ଼ା କେନ୍ଦୁଆଙ୍କଠାରୁ ପାଏଖଣ୍ଡ ଦୂରରେ ଗାଁମୁଣ୍ଡ ପଡ଼ିଆରେ ସଭାର ଆୟୋଜନ । ସାଜସଜ୍ଜାରେ ବେଶ ଖର୍ଚ୍ଚହେଇଛି । ପାଠପଢ଼ାର ଉପକାରିତା ବୁଝେଇ ଗୀତ ଛୁଟୁଛି ମାଇକ୍‌ରେ । ପାହାଡ଼ ପଟକୁ ଚାହୁଁଆ ଟଣା ମଂଚ । ବକ୍ତା ଓ ଅତିଥିମାନେ ମୁହଁ କରିବେ ବୁଢ଼ା କେନ୍ଦୁଆଙ୍କୁ । ଶ୍ରୋତାମାନେ ମୁହଁକରିବେ ପାହାଡ଼କୁ । ଟିକିଏ ଖଟକା ଲାଗୁଥିଲା । ମନକୁ ବୁଝେଇଲି । ବୁଦ୍ଧିବି ଦିଶିଲା ଏଇଠୁ ଆରମ୍ଭହବ ଆଜିର ଭାଷଣ ।

ଆୟୋଜକମାନେ ପାଛୋଟିନେବାକୁ ଆସିଲେ । ସବାଆଗେ ଧୋବଣୀ । ହସ ହସ ମୁହଁରେ ଆଗେଇ ଆସି, 'ଆସନ୍ତୁ ସାର୍ । ନିର୍ଦ୍ଦେଶକ ଆସି ପାରିଲେ ନାହିଁ ବୋଲି ଟିକିଏ ଦୁଃଖ କରିଥିଲୁ, ମାତ୍ର ଆପଣଙ୍କ ବିକ୍ରମପୁର ସଭା ଖବର ପାଇ, ଖାଲି ଅପେକ୍ଷା କରୁଥିଲୁ, କେତେବେଳେ ଦର୍ଶନ ମିଳିବ । ମହାଭାଗ୍ୟ ଆମର । ଆସିବା ହେଉ ।' ଜାଣିଲି, ଏଠି ଧୋବଣୀ ମୋର ପୁରା ଅଚିହ୍ନା ବୋଲି ଜଣେଇଦବାକୁ ଚାହୁଁଛି । ମତେ ବି ହୁସିଆର ରହିବାକୁ ହେବ । ଗାମ୍ଭୀର୍ଯ୍ୟ ବଜାୟ ରଖି ହସି ହସି କହିଲି, 'ଆପଣମାନଙ୍କ ଭଳି ନିରଳସ ସମାଜ ସଚେତନ ନିଷ୍ଠାପର ବ୍ୟକ୍ତିମାନଙ୍କୁ ଭେଟିବା ମୋର ସୌଭାଗ୍ୟ ।' ସଭାମଞ୍ଚ ଆଡ଼କୁ ଆଗେଇଲୁଁ । ବାଟରେ ଆଠଦଶଜଣ ସଂଗଠକଙ୍କ ସହ ପରିଚୟ ବି ମିଳିଲା । ନମସ୍କାର ବିନିମୟ ହେଲା ।

ଆମେ ସଭାମଞ୍ଚ ପାଖରେ ପହଂଚିଲାବେଳକୁ ରାସ୍ତାରୁ ତୁହାକୁ ତୁହା ସ୍ଲୋଗାନ ଭାସି ଆସିଲା । ଆଗେ ଆଗେ ଦୁଇଟି ମୋଟର ସାଇକ୍ଲ । ଶୋଭାଯାତ୍ରାକୁ ସଭାସ୍ଥଳକୁ ବାଗେଇଦେଇ, ଆରୋହୀମାନେ ଆସି ଆମ ପାଖରେ ପହଞ୍ଚିଲେ । ସାମ୍ନା ଗାଡ଼ିରୁ ଓହ୍ଲେଇଲେ ବିକ୍ରମପୁରରେ ଦେଖା ସେକ୍ରେଟେରି ଓ ତାଙ୍କର ଦିଜଣ ସାଙ୍ଗ । ପଛଗାଡ଼ିରୁ ଘାଟଶିଳା କଲେଜ ସଭାପତି ଓ ଦୁଇଜଣ ଅଚିହ୍ନା ପିଲା । ଧୋବଣୀ ବିକ୍ରମପୁର ଖବର ପାଇଯିବା ରହସ୍ୟ ପରିଷ୍କାର ହେଇଗଲା । ଶୋଭାଯାତ୍ରା ସଭାସ୍ତଳରେ ପହଞ୍ଚିଲା । ସମସ୍ତେ ବସିବା ଆଗରୁ ମାଇକ୍ ଘୋଷଣା କଲା, 'ଏ ସଭା ମାତ୍ର ଅଧଘଣ୍ଟାକରେ ସରିବ ବୋଲି ଆଗରୁ କୁହାଯାଇଛି । ଆମର ଏ ବଣୁଆଁ ପାହାଡ଼ିଆ ଅଞ୍ଚଳକୁ ବହୁ ଦୂର ଦୂରାନ୍ତରୁ ସମସ୍ତେ ଆସିଛନ୍ତି । ସଭା ସାରି ଘରକୁ ଫେରିବା ପାଇଁ ସମସ୍ତେ ବ୍ୟଗ୍ର । ଆଜିର ସଭାପତି ଶ୍ରୀଯୁକ୍ତା ଶରଣ ଆସିପାରି ନାହାନ୍ତି । ମୁଖ୍ୟ ଅତିଥି ଶ୍ରୀ ମହାଖୁଡ଼ଙ୍କୁ ସଭାପତି ଓ ମୁଖ୍ୟଅତିଥି ଉଭୟ ଦାୟିତ୍ୱ ନିର୍ବାହ କରିବା ପାଇଁ ଆମେ ଅନୁରୋଧ କରୁଛୁ ।'

ମଞ୍ଚଉପରକୁ ଯାଇ ମଝି ଚଉକି ଦଖଲକଲି । ଡ଼ାହାଣରେ ଧୋବଣୀ ଓ ବାଁରେ ଶ୍ରୀମାନ୍ କିଷାନ୍ ସାନ୍ ବସିଲେ । ଧୋବଣୀ କାର୍ଯ୍ୟସୂଚୀ ବଢ଼େଇଦେଲା । ଆଖି ବୁଲେଇନେଲି । ସ୍ୱାଗତ ଓ ବିଦାୟ ସଂଗୀତ ଭିତରେ ସଂଯୋଜିକାଙ୍କ ରିପୋର୍ଟ, ପାଞ୍ଚଜଣ କୃତି ସଂଗଠକଙ୍କୁ ଉପାୟନ ପ୍ରଦାନ, ମୁଖ୍ୟଅତିଥି - ସଭାପତିଙ୍କ ଭାଷଣ ଓ ଧନ୍ୟବାଦ ଅର୍ପଣ । ହିସାବକରି ଦେଖିଲି ମୋ

ଭାଷଣ ପାଇଁ ପାଞ୍ଚ ଦଶମିନିଟ୍ ମିଳିବ । ଭଲହେଲା ।

ସ୍ୱାଗତ ସଂଗୀତ ବୋଲା ହେଲା, 'ଜ୍ଞାନସୂର୍ଯ୍ୟ ଉଇଁଚି, ଅଜ୍ଞାନ ଅନ୍ଧାର ଯାଇଛି, ଆଲୋକ ଓ ଆନନ୍ଦର ପ୍ଲାବନ ଏବେ ଆସିଛି ।' ସଂଯୋଜିକା ବିବରଣୀ ପଢ଼ିଲେ । ଲମ୍ବା ବିବରଣୀ - ପନ୍ଦର ମିନିଟ୍ । ସାରାଂଶ ହେଲା, 'ପ୍ରଭୁ ବୃଦ୍ଧକନ୍ଦରେଶ୍ୱରଙ୍କ ଆଶୀର୍ବାଦରୁ, ବାବା ପଶୁପତିନାଥଙ୍କ ପ୍ରେରଣା ଓ ସହାୟତାରେ ଏ ଅଭିଯାନ ନିର୍ଦ୍ଦିଷ୍ଟ ସମୟରେ ଶେଷ ହୋଇଛି । ତାପରେ ଲମ୍ବାତାଲିକା, ପ୍ରତି ଗାଁର ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କର କର୍ମକର୍ତ୍ତା ଓ କର୍ମୀ, ମହିଳା ଓ ପୁରୁଷମାନଙ୍କ ଭିତରୁ ଅଗ୍ରଣୀହେଇ ଅନ୍ୟମାନଙ୍କୁ ସାକ୍ଷରତାପାଇଁ ପ୍ରବର୍ତ୍ତାଇଥିବା ଲୋକଙ୍କର ନାଁ, ବାହାରୁ ଯେଉଁମାନେ ସାହାଯ୍ୟ କରିଚନ୍ତି, ତାଙ୍କ ନାଁ ।' ପୁରସ୍କୃତ ପାଞ୍ଚଜଣଙ୍କ ଭିତରେ ଚାରିଜଣ ମହିଳା ଓ ଜଣେ ପୁରୁଷ —ଶ୍ରୀମାନ୍ କିଷାନ୍ । ତାପରେ ମୋ ଭାଷଣ ।

'ନିହାତି ଆକସ୍ମିକଭାବରେ ଭଗବାନ ମତେ ଏ ସୌଭାଗ୍ୟ ଦେଇଥିବାରୁ ମୁଁ ଧନ୍ୟ ହେଇଛି । ବୃଦ୍ଧ କନ୍ଦରେଶ୍ୱର ନିର୍ବିକଳ୍ପ ତାଙ୍କରି କନ୍ଦରା ବକ୍ଷରେ ଧର କନ୍ଦରେଶ୍ୱର ଶିଖର ସମସ୍ତଙ୍କ ଆଗରେ ଅନନ୍ତ କାଳରୁ ଉଭା, ସେ ଆପଣମାନଙ୍କର ଅନ୍ନଦାତା ଓ ଆଶ୍ରୟଦାତା । ଦାୟିତ୍ୱ ନିର୍ବାହ କରି କରି ଆଜି ସେ ରିକ୍ତ ଶ୍ରୀହୀନ ଏକ ଉପଳ ସମଷ୍ଟି ମାତ୍ର । ତାଙ୍କର ଶ୍ରୀ ଫେରାଇଆଣିବା ଆପଣମାନଙ୍କର ଦାୟିତ୍ୱ । ଯୋଉ ଅଜ୍ଞାନ ଅନ୍ଧକାର ଭିତରେ ରହି ଆପଣମାନେ ତାଙ୍କୁ ଶ୍ରୀହୀନ କରେଇଥିଲେ, ସେ ଅନ୍ଧାର ଯାଇଛି । ତେଣୁ ମୋର ଆଶା ଓ ବିଶ୍ୱାସ ଅଚିରେ କନ୍ଦରେଶ୍ୱର ସବୁଜଶ୍ରୀ ମଣ୍ଡିତ ହେବେ ।'

ମୁଁ ଜାଣେନା ସାକ୍ଷରତା ପରବର୍ତ୍ତୀ ପର୍ଯ୍ୟାୟରେ ଆପଣମାନଙ୍କପାଇଁ କି ପ୍ରକାର ପାଠ୍ୟକ୍ରମ ଓ ପାଠ୍ୟ ପୁସ୍ତକ ରହିବ । ତେବେ ଆଶା କରିବି ଯେ ବହିରେ ମଦ୍ୟପାନ ବିରୋଧୀ ଲେଖାରହି ଏ କାର୍ଯ୍ୟକ୍ରମ ବର୍ତ୍ତମାନ ଯେପରି ଦକ୍ଷିଣର ରାଜ୍ୟମାନଙ୍କୁ ହଜାର ହଜାର କୋଟି ଟଙ୍କା ଅବକାରୀ ଟିକସରୁ ବଂଚିତ କରୁଛି, ଏ ରାଜ୍ୟରେ ସେପରି ହେବ ନାହିଁ ।

ସମସ୍ତିଙ୍କି ସାଧୁବାଦ ଓ କନ୍ଦରେଶ୍ୱରଙ୍କୁ ପ୍ରଣାମକରି ଆପଣମାନଙ୍କଠାରୁ ବିଦାୟ ନେଉଛି । ମୁଁ ଜାଣିଥିଲି ମୋ କଥା ବିଶେଷରେ ଶ୍ଳେଷ ପ୍ରାୟ କେହି ବୁଝିନାହାନ୍ତି । ମାତ୍ର ଯଦି ଚାରିପାଞ୍ଚଜଣ ବି ବୁଝି ଏକ ସାମାଜିକ ଓ ଆର୍ଥନୀତିକ ବିପ୍ଳବର ଅୟମାରମ୍ଭ କରିପାରନ୍ତେ ଭଲ ହୁଅନ୍ତା । ମୋର ଧାରଣା ଲକ୍ଷ୍ମଣବାବୁ, ସେକ୍ରେଟେରି ଓ କିଷାନ୍ ଠିକ୍ ବୁଝିଚନ୍ତି । ଧୋବଣୀ ମଧ - ମାତ୍ର ତାକୁ କଥାଗୁରା ନ ସୁହେଇଲାପରି ମନେହେଲା ।

ସଭାସରିଲା । କିଛି ସ୍ଲୋଗାନ ଚାଲିଲା । ତା ସାଙ୍ଗରେ ମାଇକ୍ରୁ ଗୀତ । ଲୋକେ ସତରେ ତରତରହେଇ ସଭାଛାଡ଼ି ପଳେଇଲେ । ମୁଁ ଗାଡ଼ିଆଡ଼େ ମୋହଁିଲି । ଗାଡ଼ିରେ ବସିବାକୁ ଯାଉଛି, ଧୋବଣୀ ଆସି ବଡ଼ ବିନୀତ ଭାବରେ କହିଲା, 'ସାର୍ ଆମ ଗାଡ଼ିଟା ହଠାତ୍ ଖରାପ ହେଇଗଲା । ପିଲାମାନେ କହୁଥିଲେ ମତେ ସାଇକ୍ଲରେ ନେଇଯିବେ, ମାତ୍ର ମତେ ଡର ଲାଗିଲା ।

ଆପଣ ଯଦି ଟିକିଏ ଅନୁଗ୍ରହ କରନ୍ତେ .......

'ନିଶ୍ଚୟ, ବସନ୍ତୁ' କହି ପଛ ସିଟ୍ କବାଟ ଖୋଲି ଧରିଲି । ଧୋବଣୀ ଭିତରକୁ ଗଲା ।କବାଟ ବନ୍ଦକରି, ସାମ୍ନା ପଟ କବାଟ ବନ୍ଦକରି ଗାଡ଼ି ଭିତରକୁ ଯିବା ଆଗରୁ, ପଛକୁ ଫେରି ସମସ୍ତଙ୍କୁ ନମସ୍କାର ହେଲି । କିଷାନ, ସେକ୍ରେଟେରି ଓ ଜଣେ ଡେଙ୍ଗା ସୁଠାମ ଯୁବକ ମୁରୁମୁରୁ ହସୁଥିଲେ । ମତେ ଲାଗିଲା ଡେଙ୍ଗା ଯୁବକଟି ହିଁ ଲକ୍ଷ୍ମଣ ।

ଗାଡ଼ି ଚାଲିଲା । ଜିଲ୍ଲାରାସ୍ତା ଛାଡ଼ି ରାଜରାସ୍ତା ଧରିଲୁଁ । ପ୍ରଥମ ଛକରେ ଗାଡ଼ି ଅଟକିଲା । ଧୋବଣୀ କହିଲା, 'ଚାଲ୍ ନାଟୁ, ଚା ପିଇବା ।' ଚା ଦୋକାନୀକୁ ଡ୍ରାଇଭର ପାଇଁ ଚା' ପଠାଇବାକୁ କହି ଧୋବଣୀ ଚଉକିଟିଏ ଦଖଲ କଲା । ମୁଁ ଠିଆ ଠିଆ ଚା ପିଇଲି । ଗାଡ଼ିକୁ ଫେରିଲୁ । ଗାଡ଼ି ଚାଲିବା ଆରମ୍ଭ କରନ୍ତେ ଧୋବଣୀ ହସି ହସି ଗଡ଼ି ଯାଉଁ ଯାଉଁ କହିଲା, 'ବାପ୍‌ରେ ବାପ୍ । ଯୋଉ କାଣ୍ଡ କଲୁ ନାଟୁ, ବିକ୍ରମପୁରରେ, ସେମିତି ଯଦି ଏଠି କରିଥାନ୍ତୁ ନା, ସରିଥିଲୁ ଆମେ । ଯଦି କହିଥାନ୍ତୁ ଆଣ ଶିଳଟଖଡ଼ି, ଆଣ ବହି, ଏକାଠି ପଢ଼ିବା ଏକାଠି ଗୀତ ଗାଇବା ନାଚିବା !'

'ନାକରା କ'ଣ ହେଇଥାନ୍ତା ।' ପଚାରିଲେ ଡ୍ରାଇଭର । ଆଗର ବିନୀତ ଚାଳକତ ନୁହନ୍ତି ଇଏ ! ଧୋବଣୀ ସାଙ୍ଗରେ ଅନ୍ତରଙ୍ଗତା ଦେଖି ବିସ୍ମୟରେ ଧୋବଣୀକି ଚାହିଁଲି । ଧୋବଣୀ କହିଲା, 'ଏଇଟା ଆମଗାଡ଼ି । ଚାଳକ ମଧୁ, ମୋ ସ୍ୱାମୀ । ଏ ଗୁମର ଆମଦିହିଙ୍କ ଛଡ଼ା ତୁହିଁ ଏବେ ଜାଣିଲୁ । ମଧୁକହିଲେ, 'ଠିକ୍ କଲନି ବୋଧହୁଏ ।'

'ଏଁଃ ବୋଧହୁଏ ! ତମେତ ନାକରା କ'ଣ ହେଇଥାନ୍ତା ପଚାରି ବାଟ ଫିଟେଇଲ । ହଉ, ଗାଡ଼ି ଟିକିଏ ଅଟକେଇ ପଛକୁ ଆସି ଶୋଇପଡ଼ । ମୁଁ ଗାଡ଼ି ଚଳେଇବି ତମେ ନାଟୁ ସାଙ୍ଗରେ ଗପିବ ନା ସେ ଆଗରେ ବସି ମୋ ସାଙ୍ଗରେ ଗପିବ ?'

'ତମେ ଭାଇଭଉଣୀ ଗପ । କିନ୍ତୁ ହୁସିଆର, କଟକ ଆଗରୁ ଚୁପ୍‌ଚାପ୍ ପଛକୁ ଆସି ବସିବ । ମୁଁ ଷ୍ଟିଅରିଂ ଧରିବି ।'

'ଜାଣେ ବାବା ।'

ଗାଡ଼ି ଅଟକିଲା । ମଧୁ ପଛସିଟ୍‌ରେ ଗଡ଼ିଲେ । ଧୋବଣୀ ଡ୍ରାଇଭ କଲା । ଟିକକ ପରେ କହିଲା, 'ନାଟୁ, ତତେ ଅଡୁଆ ଲାଗୁଥିବ । ଦିଦିନ ହେଲା ମୁଁ ଯେପରି ଯାହା କରୁଚି କି କହୁଚି ତୁ ବୁଝି ପାରୁନଥିବୁ । ମୁଁ ତତେ ସବୁ ଫିଟେଇ କହିବା ବେଳ ଆସିନାହିଁ । ତେବେ ମୋର ଧାରଣା, ଜବରଦସ୍ତ ଇନ୍‌ଟୁଇସନ ତୋର । ନହେଲେ ଯୋଉଠି ଯେମିତି ବ୍ୟବହାର କରିବା କଥା କଲୁ କିମିତି ? ଅବଶ୍ୟ ବ୍ୟତିକ୍ରମବି କରିଚୁ - ଯେମିତି ସେ ମଦ ଆଉ କନ୍ଦରେଶ୍ୱର ପାହାଡ଼ କଥା କହି । ମୁଁ ତ ବିଚାରିଲି ଇନ୍ଦ୍ର ନିଗ୍ରହ, ଗୋବର୍ଦ୍ଧନପୂଜା ଆଡ଼େବି ମାଡ଼ିଯିବୁ । ତେବେ ଏଟାବି ତୁ ବୁଝି ବିଚାରି କରିନୁ - ତୋ ଭିତର ତାଡ଼ନାରେ କରିଚୁ । ମତେ ଆଜି ଖଟ୍‌କା ଲାଗୁଚି, ପରେ ହୁଏତ ଏକଦମ୍ ଓ୍ୟାଜିବକଥା ପରି ଲାଗିବ । ହଉ ଛାଡ଼ । ଅନ୍ୟକଥା ପଡୁ ।'

'ଅର୍ଥାତ୍ ବାବା, ମନ୍ତ୍ରୀ, ସୁପରକମ୍ପ୍ୟୁଟର, ଧୋବଣୀ ତୁ ଆଉ କିସ୍‌ମି......' ପଛରୁ ଜୋର ହସ ଶୁଭିଲା, 'କିଗୋ ସଞ୍ଜୁ, ଏଯାଏ ଯାଇଚ ?'

'ନ ଯାଇ ଗତି ନଥିଲା । ଏ ନାଟୁଟା ଯେମିତି ମୋଟାବୁଦ୍ଧିଆ, ତା ମୁଣ୍ଡରେ କିଛି ପଶିନଥାନ୍ତା । ମୁଁ ଏତେ ଗେଲେଇ ହେଲାପରେ ବି ସୁପରକମ୍ପ୍ୟୁଟର ସାଙ୍ଗରେ ଯୋଉ କାଣ୍ଡକଲା ଜାଣିଚ ।'

'ଦେଖ୍ ଧୋବଣୀ । ମଧୁବାବୁଙ୍କୁ ଭାଇଭଉଣୀ କାଇଁକି କହିଚୁ ? ସାଙ୍ଗ କହି ପାରୁଲିନି । ତୋ ମୁଣ୍ଡରେ କିସ୍‌ମିର 'ଓଲ୍ଡ଼୍‌ଫ୍ଲେମ'ଟା ଏବେବି ଅଛିନା କ'ଣ ?'

'ନାଟୁବାବୁ, ଆପଣଙ୍କୁ ମୁଁ ସାଙ୍ଗବୋଲି ଗ୍ରହଣ କରିନେଇଛି । ଯାଙ୍କ ମୁଣ୍ଡରେ ବେଳେବେଳେ ଏମିତି ପୋକପଶେ' କହିଲେ ମଧୁବାବୁ ।

'ସେମିତି ଉଖାରି ହୁଅନା, କହିବି ଦେଖିବ ?'

'କୁହ, ପଛରେ ପସ୍ତେଇବ । ଅବଶ୍ୟ ଲାଭ ହବନି, ସେତେବେଳକୁ ନାଟୁଙ୍କ ନଟୁ ନଥିବ ।'

'କେଡ଼େ ଅଲକ୍ଷଣାକଥା ବାହାରେ କହିଲ ତମ ମୁହଁରୁ ।'

'ଶୁଣ୍ ଧୋବଣୀ, ରିଷ୍କ କଟିଗଲା 'ତିନିହେଁ ହସିଉଠିଲୁ ।

ଧୋବଣୀ ନାନାକଥା ଗପିଲା, କେବଳ ଆମ ଗାଁର ସେଇ ଭାଲୁକୁଣୀ ବିସର୍ଜନ କଥାଛାଡ଼ି । ଭୁଲରେ ବି କାଇଁଚ କି ମନ୍ଦରାଙ୍କ ନାଁ ଧରିଲା ନେଇଁ ।

ମୁଣ୍ଡୁଳି ଛକରେ ଡ୍ରାଇଭର ବଦଳି ହେଲା । ତେଲେଙ୍ଗାପେଣ୍ଠ ପାଖରେ ରାସ୍ତାବନ୍ଦ । ମଧୁବାବୁ ଗାଡ଼ି ଅଟକାଇ ପଚରାପଚରି କରି ବୁଝିଲେ ଯେ ପଶୁପତି ଟ୍ରାନ୍ସପୋର୍ଟ୍‌ର ଟ୍ରକ୍‌ଟେ ଗୋଟେ ପିଲା ଉପରେ ଚଢ଼ିଯାଇଛି । ସେଇ ଭିଡ଼ଭିତରେ ପଛକୁ ଫେରି ବାଲିକୁଦା ବାରଙ୍ଗ ନନ୍ଦନକାନନ ହେଇ ଗାଡ଼ି ଭୁବନେଶ୍ୱର ପହଞ୍ଚିଲା । ଜାତୀୟ ରାଜପଥ ଛାଡ଼ିବାପରେ ମଧୁବାବୁ ଓ ଧୋବଣୀ ଏକାବେଳେ ଚୁପ୍‌ହୋଇଗଲେ । ଦିହେଁ ଘୋର ଚିନ୍ତାଗ୍ରସ୍ତ । ବାଣୀବିହାରରେ ଜଣେ ପ୍ରଫେସରଙ୍କ ଘରକୁ ଯାଇ ଫୋନ୍‌ରେ ଟ୍ରାଭଲ୍ ଏଜେଣ୍ଟଠାରୁ ଗୋଟେ ଗାଡ଼ି ମଗେଇ, ଧୋବଣୀ ଚାଲିଗଲା । ମଧୁବାବୁ ମତେ ମୋ ବସାରେ ଛାଡ଼ିଦେଇଗଲେ । ଠିକ୍ ଡ୍ରାଇଭରପରି ଆଗ ଓହ୍ଲେଇ, ପଛ କବାଟ ଖୋଲିଧରି ମୁଁ ଓହ୍ଲେଇଲାପରେ ମତେ ନମସ୍କାର ହେଇ, ଗାଡ଼ିନେଇ ବିଦାୟ ନେଲେ ।

''ମୋ ପିଲାଦିନେ ଓଡ଼ିଶାରେ ଯୋଉ ଜନ୍ତୁଟିକୁ ଗଧିଆ, କେନ୍ଦୁଆ, ହେଟା ବା ଖୁବ୍ ବେଶୀରେ ହେଟାବାଘ କୁହାଯାଉଥିଲା ସେଇଟିକୁ ଏବର ବଙ୍ଗୋଡ଼ ଭାଷାରେ ରାମଶିଆଳ କୁହାଗଲାବେଳେ ବଳିଆ କିଏ ବା କ'ଣ ତମେମାନେ ବୋଧହୁଏ ଜାଣିପାରିବ ନାଇଁ । ବାଘ, ନହେଲେ ସିଂହ, କଦବା କେମିତି ହାତୀକି ବଣର ରଜାବୋଲି କୁହାଯାଏ ସିନା, ମାତ୍ର ତାହା ଠିକଣା କଥା ନୁହଁ । ବଣଟା ଗୋଟେ ସାମନ୍ତବାଦୀ ଏକଛତ୍ରୀ ସଙ୍ଗଠନ ନୁହେଁ ଯେ ସେଠି ଗୋଟେ କିଏ ରଜା ରହିବ । ବଣ ଗୋଟିଏ ଗଣରାଜ୍ୟ । ମାନେ, ଏବର ଡ଼ିମୋକ୍ରାସି, ବା

ଗୋଟିଏ ଡ଼ିମୋକ୍ରାଟିକ୍ ରିପବ୍ଲିକ୍-ଗଣତାନ୍ତ୍ରିକ ସାଧାରଣତନ୍ତ୍ର । ଗଛ, ପଥର, ଜୀବଜନ୍ତୁ ସମସ୍ତଙ୍କର ସେଠି ସମାନ ଅଧିକାର । ସମସ୍ତେ ଏକାଠି ଛନ୍ଦାଛନ୍ଦି । ଗୋଟିକର ହାନିହେଲେ ସମସ୍ତଙ୍କର ହାନି । ଖୁବ୍‌ହେଲେ ସେଠି ବିଭିନ୍ନ ଶ୍ରେଣୀ ବା ଗୋଷ୍ଠୀ ପାଇଁ ଜଣେ ଜଣେ ମୁଖିଆ ଥିବେ । ପ୍ରାଚୀନଭାରତର ଗଣରାଜ୍ୟରେ ସେମିତି ଥିଲା । ସେଭଳି ମୁଖ୍ୟଙ୍କୁ ଦାୟିତ୍ୱ ତୁଲଉଥିବା ଯାଏ ରାଜତନ୍ତ୍ରରୁ ଉଧାର କରି କୁହାଯାଉଥିଲା 'ରାଜା' । ସେମିତି ଜଣେ ରାଜା ଥିଲେ ସିଦ୍ଧାର୍ଥ ଗୌତମଙ୍କ ବାପା ଶୁଦ୍ଧୋଦନ । ଗୋଟିଏ ଗୋଷ୍ଠୀର ମୁଖ୍ୟ ଭାବରେ ସେଇ ଗୋଷ୍ଠୀଟିର ଭଲମନ୍ଦ ସବୁକଥା ବୁଝିବା ରାଜାଙ୍କ କାମ । ବଣଟିକୁ ସେପରି ଏକ ଗଣରାଜ୍ୟ ବିଚାରିଲେ ଅଲଗା ଅଲଗା ଗୋଷ୍ଠୀର ଅଲଗା ଅଲଗା ମୁଖ୍ୟ ବାହାରିବେ । ଜନ୍ତୁଜନ୍ତାଙ୍କ ଭିତରେ ବେଶୀ ପାରିଲାର ଅର୍ଥାତ୍ ବେଶୀ ମାରଣା ବୋଲି ସିଂହ ବା ବାଘଙ୍କୁ ସିନା ରଜା କୁହାଯାଇଥାଏ ବାସ୍ତବରେ କିନ୍ତୁ ସେ ବଣରେ ବଳିଆ ଥିଲେ, ବାଘ ସିଂହ ନୁହନ୍ତି ବଳିଆ ମାନେହିଁ ରାଜା ! ବଳିଆ ବଣର କୁକୁର । ବଣୁଆଁ । ଦଳବାନ୍ଧି ରହନ୍ତି । ଗୋଟେ ଗୋଟେ ପଲରେ ପଚାଶ ଷାଠିଏରୁ ଶଏ ଦେଢ଼ଶହ କି ଆହୁରି ବେଶୀ ରହିପାରନ୍ତି । ଧୂଳିଆ ଟାଆଁସା ରୁମ । ଲମ୍ୱାଦେହ । ଲମ୍ୱା ଗୋଡ଼ । ଗୋଜିଆ ଥୋମଣା । ବିଜୁଳିପରି ଛୁଟନ୍ତି । ଝଡ଼ପରି ମାଡ଼ିଆସନ୍ତି । ତାଙ୍କୁ ନ ଡ଼ରେ, ଏମିତି ଜନ୍ତୁ ନାହିଁ । ବଳିଆ ଦୂରକଥା, ତା ନେଣ୍ଡି ପଡ଼ିଥିଲେ ଅନ୍ୟ ଜନ୍ତୁଜନ୍ତା ସେ ଚକଡ଼ାକ ଛାଡ଼ି ପଳାନ୍ତି । ପୁରୁଣା କାଳର ଭୈରବ ମୂର୍ତ୍ତିଙ୍କ ତଳେ ବାହନବୋଲି ଯୋଉ ଶ୍ୱାନର ଛବି ଥାଏ, ସେଇ ଭୈରବ-ବାହନଙ୍କର ବଂଶଧର ବୋଲି ବଳିଆମାନଙ୍କୁ ଧରିନେଲେ ଓ ସେମାନେ ଭୈରବଅଂଶୀ ବୋଲି ମନେ ରଖିଲେ, ତାଙ୍କ ବଳ, ବୁଦ୍ଧି, ପାରିଲାପଣ ସ୍‌ମେତ ନୃଶଂସତା ବିଷୟବି ବୁଝାପଡ଼ିବ ।

ସେଇ ପିଲାଦିନର କଥାଟିଏ ମନେ ପଡୁଚି । ଆମ ଅଂଚଳର ଜାଗ୍ରତ ଠାକୁରାଣୀ ବୁଢ଼ାକେନ୍ଦୁଆ ଆଉ ତାଙ୍କ ଟୋକା ଚେଲା ବୀରବଲଙ୍କ ଆସ୍ଥାନ ମଝାମଝି କୁଣ୍ଡବାଙ୍କ ଚକଡ଼ାରେ ଚାଷକାମ ଆରମ୍ଭ ହେଇଥାଏ । ଖରାଦିନ । ରଜ ଆଗରୁ କଡ଼ାଣ ଦୋଅର ସାରି ଖରଡ଼ିବୁଣା ନରିଦେଲେ ରଜମେଘରେ ଧାନ ଗଜାହେଇଯିବ । ନହେଲେ ରଜ ପରେ ପରେ କୁଣ୍ଡବାଙ୍କ ଜମିରେ ଝର ମାଡ଼ିଗଲେ ଆଉ ହଳ କରିହବ ନାଇଁ । ସେଥିପାଇଁ ପାହାନ୍ତାରୁ ଦଳବାନ୍ଧି ଚାଷୀଏ ହଳବଳଦ ଲଙ୍ଗଳ ଧରି ବିଲରେ ହାଜର ହୁଅନ୍ତି । ଓଳିକିଆ ହଳକରି ଦିପହରରେ ବାହୁଡ଼ି ଆସନ୍ତି । କଅଁଳ ଗାଧୁଆ ବେଳେ ସେମାନଙ୍କ ପାଖରେ ତୋରାଣି ପାଣି ପହଞ୍ଚେଇବା ପିଲାଙ୍କ କାମ । କୋଡ଼ିଏ ପଚିଶଟା ହଲ ବୁଲୁଥାଏ । ଆମେ ସିମିତି ପଚିଶ ଜଣଯାଏ ପିଲା ପାଣି, ତୋରାଣି, ପିଙ୍କାପାଇଁ ଧୂଆଁପତ୍ର ଓ ଶାଳପତ୍ର, ଆଉ ଦି ଚାରିଟା ନିଆଁ ବରିଆ ଧରି ବାହାରି ପଡ଼ିଲୁ । ଆମେ ପହଞ୍ଚନ୍ତେ ଚାଷୀଏ ହ' ହ' କରି ବଳଦ ଅଟକେଇ, ଲଙ୍ଗଳ ଫାଳ ଗୁଡ଼ାକୁ ଭଲକରି ବିଲମାଟିରେ ଦାବିଦେଇ ଝରବନ୍ଧ ଓପର ହିଞ୍ଜଳଗଛ ଛାଇରେ ବସି ପଡ଼ିଲେ । ତୋରାଣି ପାଣି ପିଇ ପିଙ୍କା ଧରେଇଲେ ।

ଆମେସବୁ ବାଦବୁଦିଆହେଇ ଝରତଳ କିଆରିରୁ ଶୁଖିଲା ଶାମୁକା ଗୋଟଉଁ ଥାଉ । ବୈଶାଖ ସରିଆସୁସାଏ । ଧୂମ୍ ବଣପୋଡ଼ି ହଉଥାଏ । ଧୂଆଁରେ ଚାରିଆଡ଼ କୁହୁଡ଼ିଆ ଦିଶୁଥାଏ । ତା ସାଙ୍ଗକୁ ବଣ ପୋଡ଼ିର ଗନ୍ଧ ସବୁଆଡ଼େ ଚହଟି ଯାଉଥାଏ । ହଠାତ୍ ଉପରମୁଣ୍ଡ ତଇଲାରେ ଗୋଟେ ହରିଣ କୁଦା ମାରି ମାରି ଦଉଡୁଥିବା ଦେଖି ପାଟିକଲି - ହେଇ, ହରିଣ । ଗୋଟେ ଟୋକା ଚଷାପିଲା କହିଲା, 'ହ୍ୟାଛ, ବଣପୋଡ଼ିରେ ପଳଉଚି ।' ସମସ୍ତେ ସିଆଡ଼େ ଚାହିଁଥାନ୍ତି - ଆଉ ଗୋଟେ ହରିଣ ଦେଖା ପଡ଼ିଲା - ତା ପଛକୁ ପଛ ହରିଣଙ୍କ ସୁଅ ଛୁଟିଲା । ହରେକ କିସମର ହରିଣ - ଶିଙ୍ଗାଳ, ମାଦୀ, ଗଛା, ଚିଆଁ । ଗୋଟାକୁ ଗୋଟା କୁଦାମାରି ପଳଉଥାଆନ୍ତି । ଜଣେ ବୁଢ଼ା ଚାଷୀ କହିଲେ, 'ହୁସିଆର, ବଳିଆ ।' ସେତିକିରେ ପିଠିରେ କୋରଡ଼ା ବାଜିଲାପରି ଚଷାଏ ଆମ ବାହାଧରି ଶୂନ୍ୟେ ଶୂନ୍ୟେ ଟେକିନେଇ, ହଳବଳଦ ପାଖରେ ଠିଆକରେଇ ପାଞ୍ଚଣ, ବାଡ଼ି, କଟୁରି, ଠେଙ୍ଗା ଯାହା ହାତରେ ପଡ଼ିଲା ଧରି, ତଇଲା ଆଡ଼େ ମୁହଁ କରି ଠିଆହେଇ ଅନିଷା କରିବାରେ ଲାଗିଲେ । ହରିଣ ପଲ ଦଉଡୁଥାଆନ୍ତି । ମା' ହରିଣ ଗୁରା ଛୁଆଙ୍କୁ ନିଘା ନଦେଇ ଛୁଟିଚାଲିଥାନ୍ତି । ଛୁଆଗୁଡ଼ା ପଛରେ ପଡ଼ି ଯାଉଥାନ୍ତି । ଚାଳିଶ ପଚାଶ ଭଳିଆ ବଳିଆ ଛୁଆଗୁରାଙ୍କଠୁ ପୁଳାଏ ନେଖା ମାଉଁସ ଭିଡ଼ିନେଇ, ପାଟିରେ ଧରି, ବଡ଼ ହରିଣଙ୍କ ପିଛା କରୁଥାନ୍ତି । ଆମ ଭାଗ୍ୟ ଭଲ । ବୁଢ଼ା କେନ୍ଦୁଆ ଦୟାରୁ ହରିଣ କି ବଳିଆ କେହି ଆମଆଡ଼େ ନ ଆସି ଉତ୍ତର ମୁହାଁ ତିନିମୁଣ୍ଡିଆ ପାହାଡ଼ ଆଡ଼େ ପଳେଇଲେ ।

ସେଦିନ ଚାଷକାମ ସେଇଠି ହ' ହେଲା । ହଳ ଫିଟାହେଲା । ବଳଦଗୁରା ଯୁଆଳିରୁ ଫିଟି ବାଟରେ ଘାସ ଲଟିରେ ମୁହଁ ମାରି ମାରି ଘରମୁହାଁ ଚାଲିଲେ । ଚାଷୀଏ ଯୁଆଳି ହଳ ଲଙ୍ଗଳ କାନ୍ଧରେ ବୋହି ଆମମାନଙ୍କୁ ଆକଟ କରି କରି ଗାଁ ମୁହାଁ ହେଲେ । ଗାଁରେ ଯେଝା ଘରେ ଲଙ୍ଗଳ ଯୁଆଳି ଥୋଇ ବଳଦ ଆଇଲେ ବାନ୍ଧିଦେଇ କୁଳୁଚିପାଣି ଦବାପାଇଁ ମାଇପୀମାନଙ୍କୁ କହି, ଚଷାଏ ବଣଭିତରକୁ ନଉଟିଲେ । ତାଙ୍କ ସାଙ୍ଗରେ ଗାଁର ଆଉମାନେ । ସେମିତି ଦେଖିଲେ ଗାଁର ଆଧାଅଧି ଲୋକ ବଣଭିତରକୁ ଉଠି ଆସିଥିବେ ସେଦିନ । ବଣସାରା ଖଣ୍ଡିଆ ଖାବରା ଛୋଟା କେମ୍ପା ହରିଣ ଖୋଜା ଚାଲିଲା । ମୋଟ ଦଶଟା ହରିଣ ମିଳିଗଲେ । ଗୋଟେ ଖମା ଭିତରେ ଜମାରୁ ଖଣ୍ଡିଆ ଖାବରା ନହେଇ ଖାଲି ଆଲିଜାହେଇ ଧକଉଥିବା ଗୋଟେ ଛୁଆ ହରିଣ ! ସର୍ବ ସମ୍ମତିରେ ହରିଣ ଛୁଆଟିକି ବୀରବଲ୍ ନାଆଁରେ ପାଣିଟେକି ଦିଆଗଲା । ସେଇଟି ଆମ ଗାଁର ମହାଦେବଙ୍କ ଷଣ୍ଢପରି ସଂପୂର୍ଣ୍ଣ ସ୍ୱାଧୀନ ଭାବରେ ଗାଁର କୋଠ ଚାନ୍ଦ ପରି ବଢ଼ିଲା । ଗାଁରେ ସେଦିନ ସବୁଘରେ ହରିଣ ମାଉଁସ ଭୋଜି ହେଲା ।

ତମେମାନେ ଜାଣ ଯେ ଆତ୍ମାର ବିନାଶ ନାହିଁ । ମଣିଷଟିଏ ପୁରୁଣା ଲୁଗା ଫୋପାଡ଼ିଦେଇ ନୂଆଲୁଗା ପିନ୍ଧିଲା ପରି, ଶରୀରଟା ଅକ୍ଷମ ହେଇଗଲେ ଆତ୍ମା ଆଉ ଗୋଟିଏ ଦେହ ଖୋଜିନିଏ । ତେବେ ଏ ନୂଆ ଦେହଟି କାହା ଦେହ ? ମଣିଷ, ଜନ୍ତୁଜନ୍ତା, ପୋକ ଜୋକ ନା ଆଉକିଛି ତାହା ଜୀବର କର୍ମ ଉପରେ ନିର୍ଭର କରେ । ପୂର୍ବଜନ୍ମର କର୍ମ ଯାହା ଅର୍ଜନକରେ ପର ଜନ୍ମରେ ତାର

ଫଳ ଭୋଗହୁଏ । ଏହାକୁ ପ୍ରାରବ୍ଧ କୁହାଯାଏ ।

ମୁଁ ହେତୁହେଲା ଦିନୁ ମାନି ଆସିଥିବା ବୁଢ଼ା କେନ୍ଦୁଆ ଠାକୁରାଣୀ ଏବେ ମତେ ସପନେଇଲେ :

'ଆରେ ବାବୁ, ମୁଁ ଜଗତ୍ର ରଚିଲି । ମାଟି ଗୋଡ଼ି ପଥରଠୁଁ, ନିଆଁ ପାଣି ପବନ, ଗଛ ବୃଛ, ଲଟାଲଟି, ଜନ୍ତୁଜୁନ୍ତା, ଚଢ଼େଇ, ପୋକଜୋକ ଏମନ୍ତକି ଭୂତପ୍ରେତ ସବୁ ସର୍ଜନା କଲି । ମଣିଷକୁ ଗଢ଼ିଲି - ତାକୁ ବୁଦ୍ଧି ବିବେକ ଦେଲି । ଏବକୁ ମଣିଷ ଗୁରା ସବାଖିଆ ପାଲଟିଲେଣି । ବୁଦ୍ଧି ବିବେକ ସବୁ ପୋଡ଼ି ଖାଇଲେଣି । ତାଙ୍କ ଘଟଟିମାନ ପୁରୁଣା ହେଲେ କାୟାପାଲଟି ହଉଚି ଯେ ସେମାନେ ଅଧିକାଂଶ କୀଟପତଙ୍ଗ ଯୋନିରେ ନହେଲେ ଭୂତାଣୁ ହେଇ ପୁନର୍ଜନ୍ମ ପାଉଚନ୍ତି । ବଣ ଗଲାଣି । ପାହାଡ଼ ମୁଣ୍ଡିଆ ବି ଉଭେଇ ଯାଉଚନ୍ତି । ବଣର ଜନ୍ତୁଜୁନ୍ତାଙ୍କୁ ଚରିବୁଲିବାକୁ ଥାନ କାଇଁ ? ସେଗୁରା ନଖାଇ ନପିଇ ମରୁଚନ୍ତି । ତାଙ୍କର ଚାରା ବି କ'ଣ ? ସେପାଇଁ ସେମାନେ ମଣିଷହେଇ ଜନ୍ମନ୍ତୁ ବୋଲି ମୁଁ କହିଦେଲି । ତାଙ୍କ ଭିତରୁ ଯୋଉଗୁଡ଼ା ବେଶୀ ମାରଣା ଯେମିତି ବାଘ, ଭାଲୁ, ବିଲୁଆ, ସାପ, ଗଧିଆ ସେଗୁଡ଼ା ଆପଣା ଗୁଣ ଛାଡ଼ିପାରୁ ନାହାନ୍ତି । ମଣିଷ ଶରୀର ପାଇଲାପରେ ମଧ ଆପଣା ପାରିଲାପଣ ଦେଖେଇହବାକୁ ସହର ବଜାର କରୁଚନ୍ତି । ଆହୁରି ଆହୁରି ବଣ ପାହାଡ଼ ଉଜାଡୁଚନ୍ତି । ମାଟି ପାଣି ପବନ ସବୁ ବିଷାଣ କରୁଚନ୍ତି । ଠେକୁଆ, ହରିଣ ଆଦି ନିରୀହ ଜନ୍ତୁଗୁଡ଼ା ଗାଁ ଗଣ୍ଡାରେ ପଡ଼ି ରହୁଛନ୍ତି । ସାପ ଭାଲୁ ବାଘ ଚିଲ ଛଞ୍ଚାଣ ଶାଗୁଣା ମହୀର ଭାରା ବଢ଼େଇଲେଣି ଦେଖି, ବିଚାରୁଚି ବଳିଆଙ୍କ ମୁଣ୍ଡରେ ଆଉଟିକିଏ ବୁଦ୍ଧି ପୂରେଇଦେବି । ସେମାନେ ଯଦି ଏ ମାରଣା ଜନ୍ତୁଙ୍କୁ ଡ଼ରେଇମରେଇ ବାଟକୁ ନ ଆଣିବେ, ସୃଷ୍ଟିଗଲା ଜାଣ । ଏଭଳି ଜନ୍ତୁ ମଳେ କି ଦେହ ଦିଆଇବି ଭାବି ମତେ ଭୁଆସୁଣୀ ସଜଡ଼ା ଚିଲମବି ଆଉ ଭଲ ନାଗୁନେଇଁ । ତତେ ଓ ତୋ ଭଳିଆ ମୋର ଭକ୍ତମାନଙ୍କୁ କେତେ ସପନେଇଲିଣି । ତମେମାନେ ନାଗିପଡ଼ । ଉଜୁଡ଼ା ବଣ ପୁଣି ବଢୁ । ଏ ବାଘ ଭାଲୁ ଗଧିଆ ସାପ ଚିଲ ଛଞ୍ଚାଣ ନରଦେହ ଛାଡ଼ି ପୁଣି ଜନ୍ତୁଶରୀର ପାଇଲେ ମହୀ ସମ୍ଭଳା ପଡ଼ିବ । ନଇଲେ ଜାଣିଥା ! ମତେ ଆଉ କୋଉଥିରେ ହେଲେ କିଛି ସୁଖ ଲାଗୁନାହିଁ । ତମେମାନେ ନ ଚେତିଲେ ସବୁ ପୋକ ଜୋକଙ୍କୁ କହିଦେବି - ଯା ଏଡ଼ସ୍ ଭୂତାଣୁ ହେଇ ଜଗତ୍ର ଚରିଯା । ନା ଥିବେ ମଣିଷ ନା ଥିବ ଜଂଜାଳ !''

ଏଇତକ ଗୋଟେ ପରିବେଶ ସଂରକ୍ଷଣ ସଭାରେ ଦିଆଯାଇଥିବା ମୋ ଭାଷଣର ସାରାଂଶ । ସଭା ହେଇଥିଲା ଆମ ସହରର ଗୋଟେ କଲେଜ୍‌ରେ । ସଭା ମଉଳନ୍ତେ ବାବୁଟିଏ ଖବର ଦେଲା – ଆଜ୍ଞା ପ୍ରିନ୍ସିପାଲ ତାଙ୍କ ଚେମ୍ବରକୁ ଡ଼ାକୁଚନ୍ତି । ଭାଷଣ ଦେଇ ମୋ ତଣ୍ଟି ଶୁଖିଯାଇଥିଲା । ସଭା ଦିଘଣ୍ଟା ଡ଼େରିରେ ଆରମ୍ଭ ହେଇଥିଲା - କାରଣ ପିଲା ଓ ମାଷ୍ଟ୍ରମାନେ ଗୋଟେ ଡ଼େ-ନାଇଟ୍ କ୍ରିକେଟ୍ ଖେଳ ଦେଖାରେ ବ୍ୟସ୍ତଥିଲେ । ରାତି ଦଶଟା ବେଳେ କି ସଭା ! ଭାରୀ ଭୋକ ହଉଥିଲା । ବାବୁଟି ଖବର ଦବାରୁ ମନଟା ଖୁସ୍ ହେଇଗଲା । ବୋଧହୁଏ ପରମ

ରୁଚିକର ଚର୍ବ୍ୟ ଚୋଷ୍ୟ ଲେହ୍ୟ ପେୟର ବ୍ୟବସ୍ଥା ହେଇଚି । ପ୍ରିନ୍ସିପାଲ ମହୋଦୟଙ୍କୁ ଘଣ୍ଟଘୋଡ଼େଇବା ପାଇଁ ବୁଢ଼ା କେନ୍ଦୁଆକୁ ଜଣଉ ଜଣଉ ତାଙ୍କ କୋଠରୀକୁ ଗଲି । ସମ୍ଭାଷଣ ପରିବର୍ତ୍ତେ ଗାଳି ଶୁଣିଲି, 'ଆଛା ବେଆଡ଼ା ଲୋକ ଆପଣ । ଏପରି ଅସାମାଜିକ କଥା କହନ୍ତି କାହିଁକି ?' କୋଉକଥାଟା ଅସାମାଜିକ ପଚାରିବାକୁ ମନ ହଉଥିଲେବି, ପେଟ କଁ କଁ କରୁଥିବାରୁ ଭବିଷ୍ୟତ ଭୋଜି ଆଶାରେ ଦାନ୍ତ ନିକୁଟି କହିଲି, 'ନାଇଁ ଆଜ୍ଞା । ରାତି ଦଶଟାରେ ବକ୍ତୃତା ନଦେଇ ଫେବ୍ଲେଟ ଶୁଣାଉଥିଲି । ଆଚାର୍ଯ୍ୟ ବିଷ୍ଣୁଶର୍ମା ଓ ମହାମହିମ ଇସପ୍ ଏ ମାର୍ଗ ବହୁ ଦିନରୁ ଫିଟେଇ ସାରିଚନ୍ତି ।'

'ହଉ, ଆସନ୍ତୁ ।'

ଆସିଲି । ଘରେ ପହଂଚିଲି ରାତି ଅଧରେ । କଲେଜରେ ଖାଇବାକୁ ମିଳିଲା ନାହିଁ ! ତେଣୁ କଥାଟା ଏତିକିରେ ଛିଡ଼ିବ ନାହିଁ । କଲେଜ ଅଧକ୍ଷ,ମନ୍ତ୍ରୀଙ୍କ ନିର୍ଦ୍ଦେଶରେ ସେମିତି କଲେ ବୋଲି ଲାଗୁନେଇଁ । ଅଫିସ୍ ଯାଉଥାଏ । ନିଜ କାମଦାମ କରୁଥାଏ । ଦିଦିନପରେ ମନ୍ତ୍ରୀଙ୍କ ଘରୋଇ ସେକ୍ରେଟେରୀ ଫୋନ୍ କଲେ, 'ମିନିଷ୍ଟର କଥାହେବେ । ଆସନ୍ତୁ ।'

ଗଲି । ସେକ୍ରେଟେରୀ କହିଲେ - ସିଧା ଭିତରକୁ ଯାଆନ୍ତୁ । ଭିତରକୁ ଯାଇ ମନ୍ତ୍ରୀଙ୍କୁ ନମସ୍କାର ହେଲି । ସେ ମୁହଁଟି ତଳକୁ କରି ପଚାରିଲେ, 'ଆପଣଙ୍କୁ ପଚାଶ ହେଇଗଲାଣି ?'

—ଆଜ୍ଞା ନା, ଆଉ ଠିକ୍ ତିନିମାସ ଅଛି ।

—ଆପଣଙ୍କ କୀର୍ତ୍ତିକଳାପ କୌଣସି ସଭ୍ୟଦେଶ ବା ଦାୟିତ୍ୱ ସଂପନ୍ନ ସରକାର ସହ୍ୟ କରିବା କଥା ନୁହଁ । ଆଜି ଆପଣଙ୍କ କୈଫିୟତ୍ ମଗାଯାଉଛି । ଗୋଟେ ଗଣତାନ୍ତ୍ରିକ ସରକାରର ମନ୍ତ୍ରୀ ହେଇଥିବାରୁ ଓ ଆପଣ ଭଲ ପାଠ ଶାଠ ପଢ଼ି ଏତେକାଳ ଚାକିରି କରିଥିବାରୁ ଟିକିଏ ଦୟା ହେଉଛି । ଏଇଟା ଆପଣଙ୍କୁ ଶେଷ ସତର୍କବାଣୀ । ବୁଝି ବିଚାରି କୈଫିୟତ୍ ଦେବେ । ଆସନ୍ତୁ ।

ଆସିଲି । ଅଫିସରେ ଗୋଡ଼ ନ ଦଉଣୁ, ସଚିବଙ୍କ ଫୋନ୍, 'କିହୋ, ଏତେ ଡ଼େରିରେ ଅଫିସ୍ ଆସୁଚ ଯେ ?

—ସମୟ ଆଗରୁ ଆସିଥିଲି । ତଲବ୍ ପାଇ ମନ୍ତ୍ରୀଙ୍କୁ ଦେଖା କରିବାକୁ ଯାଇଥିଲି ।

—ମନ୍ତ୍ରୀ ! କାହା ଅନୁମତିରେ ତାଙ୍କୁ ଭେଟିଲ ?

—ମନ୍ତ୍ରୀ ଡକେଇଚନ୍ତି ଓ ମୁଁ ଯାଉଛି ବୋଲି ମୋ ଓପର ହାକିମଙ୍କୁ ଲେଖିଦେଇ ଯାଇଥିଲି ।

—ସେ ରିପୋର୍ଟଟା ପଠେଇଲ ?

—ପଶୁପତି ସଂସ୍ଥାନର ଲୋକେ ଆଜି ଦଲିଲ୍ ଦସ୍ତାବିଜ୍ ଧରି ଓପରଓଳି ତିନିଟାରେ ଆସିବେ । ସବୁ ତନଖିକରି ରିପୋର୍ଟ ଚିଠା କରିବାକୁ ଘଣ୍ଟେ ଦେଢ଼ଘଣ୍ଟା ଲାଗିବ । ଛ'ଟା ସୁଦ୍ଧା ରିପୋର୍ଟ ପହଞ୍ଚେଇ ଦେବି । ରିପୋର୍ଟଟା ଏଠା ବଡ଼ ହାକିମ ନ ଦେଖିବା ଯାଏ ସେଟାକୁ ସରକାରୀ ନଥିଭାବରେ ପଠେଇ ହବନି । ଅଫିସରେ ନହେଲେ ଘରେ ଆପଣଙ୍କ ପାଇଁ ଅଗ୍ରୀମ କପିଟିଏ

ଦେଇ ଦେବି । ମୂଳକପିଟି ବଡ଼ ହାକିମ ଯେବେ ପଠେଇବେ, ପଠେଇବେ ।

ଫୋନ୍ ଥୋଇଚି, ବଡ଼ ହାକିମ ଡ଼ାକିଲେ, 'କିହୋ, ମନ୍ତ୍ରୀଙ୍କ ସାଙ୍ଗରେ ସିଧା କାରବାର କ'ଣ ? ମୁଁ ଅଛି, ସଚିବ ଅଛନ୍ତି ।'

–ଆଜ୍ଞା, ମୁଁ ସରକାର ନାମକ ଜନ୍ତୁଟିର ଲାଙ୍ଗୁଡ଼ର ଶେଷ ବାଳ । ମୁଣ୍ଡ ନାଡୁ କି ଗଣ୍ଡି ଝାଡୁ, ଲାଙ୍ଗୁଡ଼ ହଲିଲେ ହଲିବା ମୋ କାମ । ମୁଣ୍ଡକୁ ପଚାରନ୍ତୁ ।

ହସିଲେ ହାକିମ, 'ହୁଁ, ଶେଷ ବାଳ ! ମୁଁ କୋଉଠି ?'

–ଅଥାନ ଥାନ, କହି ହୁଏନି ।

ହାକିମଙ୍କ ମନକୁ ପାଇଗଲା । ବିଶେଷରେ ତାଙ୍କପରି ପୁରୁଷର୍ଷଭଙ୍କ ପୌରୁଷଟାକୁ ଇଙ୍ଗିତ କରିଥିବାରୁ ହୋ ହୋ ହେଇ ହସିଉଠି କହିଲେ, 'ହଇହୋ, ସବୁତ ଜାଣୁଚ । ଟିକିଏ ସହି ସମ୍ଭାଳି ଯାଅ ।'

–ଆଜ୍ଞା ।

–ରିପୋର୍ଟଟା ସଂଙ୍ଗରେ ଦେଇଦବ !

– ଆଜ୍ଞା । ସଚିବଙ୍କୁ କହିସାରିଚି । ମୂଳଟି ଆପଣଙ୍କୁ ଓ ଅଗ୍ରୀମ କପିଟିଏ ତାଙ୍କୁ ପଠେଇବି ଛ'ଟା ସୁଦ୍ଧା । ମୂଳକପିଟି ଆପଣ ଯେବେ ପଠାଇବେ, ପଠାଇବେ ।

–ତମଠୁ ପାଇବାର ଅଧଘଣ୍ଟାଏ ପରେ ।

ହାକିମଙ୍କ ପାଖରୁ ଯାଇ ନିଜ ଜାଗାରେ ବସି କାମଦାମରେ ମନଦେଲି । କୋଡ଼ିଏ ପଚିଶମିନିଟ୍ ପରେ ହାକିମ ପୁଣି ଡ଼କାଇଲେ । ଗଲି ।.ସେ ଖଣ୍ଡେ ସରକାରୀ କାଗଜ ବଢ଼େଇଦେଲେ । ସେଥିରେ ସରକାର ତାଙ୍କୁ ଲେଖିଛନ୍ତି ଯେ ଅମୁକ ତାରିଖରେ କାହିଁକି ଡ଼େରିରେ ଆସିଥିଲି, ତମୁକ ତାରିଖରେ କାହିଁକି ମୋଟୁରୁ ଆସି ନଥିଲି ଓ ଆଜି ପୁଣି କିଆଁ ଡ଼େରିରେ ଆସିଲି, ଏସବୁ ଦୋଷପାଇଁ ମୋର କୈଫିୟତ୍ ତଲବ କରି, ମୋ କୈଫିୟତ୍ ଉପରେ ତାଙ୍କ ମନ୍ତବ୍ୟ ଦେଇ ସାଙ୍ଗେ ସାଙ୍ଗେ ସରକାରଙ୍କୁ ଦେଇଦିଅନ୍ତୁ । ମୋ ପାଖକୁ ଏ ଚିଠିର କପି ଓ ନିର୍ଦ୍ଦେଶ –ଅମୁକଲୋକ ଆଜି ଯେମିତି ଲିଖିତ୍ କୈଫିୟତ୍ ଦାଖଲ କରେ ।

ହାକିମଙ୍କ ଟ୍ରେରୁ କାଗଜ ଖଣ୍ଡେ ଉଠେଇ ଆଣି ଲେଖିଲି :

୧. ଅମୁକ ତାରିଖ ମନ୍ତ୍ରୀଙ୍କ ହୁକୁମ୍‌ରେ ତାଙ୍କ ସାଙ୍ଗରେ ପଶୁପତି ଆଶ୍ରମକୁ ଯାଇଥିଲି । ଯିବା ପୂର୍ବରୁ ଏ କଥା ଲିଖିତ ଭାବରେ ମୋ ବଡ଼ହାକିମଙ୍କ ଗୋଚରାର୍ଥେ ଲେଖିଦେଇ ଯାଇଥିଲି । ସେଦିନ ଡ଼େରିରେ ନୁହଁ, ଅଫିସ ସମୟର ଦୁଇଘଣ୍ଟା ଆଗରୁ ମନ୍ତ୍ରୀଙ୍କ ଛାମୁରେ ହାଜର ହୋଇଥିଲି ।

୨. ତମୁକଦିନ ମୋ ଓପର ହାକିମଙ୍କ ନିର୍ଦ୍ଦେଶରେ ଦୁଇଟି ସଭାରେ ଯୋଗଦେବା ପାଇଁ ଗସ୍ତକାର୍ଯ୍ୟକ୍ରମ ଦେଇ, ଯାଇଥିଲି ଓ ରାତି ଅଧପରେ ମୋ ଘରେ ପହଂଚିଥିଲି ।

୩. ଆଜି ମନ୍ତ୍ରୀଙ୍କ ହୁକୁମ୍‌ରେ ତାଙ୍କ ପାଖକୁ ଯାଇଥିଲି ଓ ତାଙ୍କୁ ଭେଟିସାରି ସିଧା ଅଫିସକୁ ବାହୁଡ଼ିଥିଲି । ପହିଲୁ ଅଫିସ୍ ଆସିଥିଲି ଦଶଟା ଆଗରୁ ଓ ମନ୍ତ୍ରୀଙ୍କ ପାଖରୁ ବାହୁଡ଼ି ପହଂଚିଥିଲି ସାଢ଼େ ଏଗାରଟାରେ । ତାପରେ ଯୋଡ଼ିଲି - ଏହା ମୋର କୈଫିୟଦ୍ ନୁହଁ । ସରକାର ଜାଣିବାକୁ ଚାହିଁଥିବା ବିଷୟମାନଙ୍କ ଓପରେ ଯାହା ଯାହା ଘଟିଥିଲା, ତାହାର ବିବରଣ ମାତ୍ର । ସରକାରଙ୍କ ଗୋଚରାର୍ଥେ ଏହା ମୋ ବଡ଼ହାକିମଙ୍କ ଜରିଆରେ ପଠାଯାଉଛି ।

ହାକିମଙ୍କୁ ଚିଠିଟା ଦେଖାଇଲି । ସେ ଆଖିବୁଲେଇ ନେଇ ମୋ ହାତକୁ ବଢ଼େଇଦେଲେ, 'ଆକାଉଣ୍ଟ କହ, ଷ୍ଟେଟମେଣ୍ଟ କହ କି କୈଫିୟଦ୍ କହ, ତମେ ତମକଥା ଲେଖିଲ । ତେବେ ଟୋନ୍‌ଟା ଟିକିଏ ନରମ ହେଇଥିଲେ ଭଲ ହେଇଥାନ୍ତା । ଏତେ ରାଗ କାଇଁକି ?'

କି ଜବାବ ଦେବି ! ରାଗ କାହିଁକି ସେ କ'ଣ ଜାଣିନାହାନ୍ତି ? କହିଲି, 'ଆଜ୍ଞା ତିନିଟି କପି ଟାଇପ୍ କରେଇ ଗୋଟେ ମୁଁ ରଖିବି ଓ ଦୁଇଟି ଆପଣଙ୍କୁ ଦେବି । ଆପଣ ମୂଳଟିରେ ଆପଣଙ୍କ ମନ୍ତବ୍ୟଦେଇ ସରକାରଙ୍କୁ ପଠାଇବେ ଓ ଦ୍ୱିତୀୟଟି ଆପଣଙ୍କ ମତାମତ ସହ ଫାଇଲ୍‌ରେ ରହିବ ।'

ହାକିମ ଭାରୀ ଗମ୍ଭୀର ଦିଶୁଥିଲେ, 'ହଉ । ତମ ଓପରେ ଏମାନେ ଏତେ ଖପ୍ପା କାହିଁକି ?'

'ଏମାନେ ମୋ ଓପରେ ଖପ୍ପା, ନୁହନ୍ତି । ଏମାନେ ଚାହାଁନ୍ତି ଯେ ଦେଶସାରା ସମସ୍ତେ ତାଙ୍କରି କଥାରେ ଉଠ୍ ବସ୍ ହୁଅନ୍ତୁ । ସବୁ ଆଇନ୍ କାନୁନ୍ ସେମାନଙ୍କ ମତଲବ ସାଧିବାକୁ ବ୍ୟବହାର କରାଯାଉ, ସେଇଭଳି ଅର୍ଥ କରାଯାଉ ବା ଦରକାର ପଡ଼ିଲେ ବଙ୍କାଯାଉ ନତୁବା ଭଙ୍ଗାଯାଉ । ଉପସ୍ଥିତ କ୍ଷେତ୍ରରେ ସେ ପଶୁପତି ସଂସ୍ଥାନଟାକୁ ମଂଜୁରି ଦବା ପାଇଁ ସୁପାରିସ୍‌ଟା ଆମବିଭାଗ ଜରିଆରେ କରେଇବା ପାଇଁ ଚାହାଁନ୍ତି । ସେଥିପାଇଁ ମୋ ଓପରେ ଏହା ଏକ ରକମ ଚାପ ପ୍ରୟୋଗ ।

ହାକିମ କହିଲେ, 'ହୁଏତ ଠିକ୍ ।'

'ଆସେ ଆଜ୍ଞା' କହି ମୋ ଜାଗାକୁ ଫେରିଆସିଲି ।

ମୁଁ ଜାଣୁଥିଲି, ପଶୁପତି ଅନୁଷ୍ଠାନର ନଥିପତ୍ର କିମିତିଆ ହବ ଓ ମୋ ରିପୋଟ୍ କେମିତି ହବ । ତେଣୁ ଦୁଇଖଣ୍ଡ ଦରଖାସ୍ତ ଲେଖିଲି । ପ୍ରଥମ ଦରଖାସ୍ତ -

ଏ ଦରଖାସ୍ତକାରୀ ପଚିଶ ବର୍ଷରୁ ବେଶୀ ସରକାରୀ ଚାକିରି କରିସାରିଚି ଓ ଆଉ ତିନି ମାସପରେ ତାର ବୟସ ପଚାଶ ହବ । ସେ ସ୍ୱଇଛାରେ ଅବସର ନବାକୁ ଚାହେଁ । ସରକାରଙ୍କୁ ଏତଦ୍ୱାରା ନିବେଦନ କରାଯାଉଛି ଯେ ଦରଖାସ୍ତକାରୀର ସ୍ୱେଚ୍ଛାମୂଳକ ଅବସର ମଂଜୁର କରି ଯଥାବିଧି ବିଜ୍ଞପ୍ତି ପ୍ରକାଶ କରାଯାଉ ।

ଏହାକୁ ଏକ ତିନିମାସିଆ ନୋଟିସ୍ ବୋଲି ମଧ ଗ୍ରହଣ କରାଯାଉ । ତିନିମାସ ପୂରିଗଲେ

ସେହିଦିନରୁ ଛାଏଁ ଛାଏଁ ଅବସର ନେଇଛଚି ବୋଲି ମଧ୍ୟ ଧାର୍ଯ୍ୟ ହେଉ ।'

ଦ୍ୱିତୀୟ ଦରଖାସ୍ତ :

ପତ୍ରାନ୍ତରେ ମୁଁ ସ୍ୱେଚ୍ଛାମୂଳକ ଅବସର ନେବାପାଇଁ ନିବେଦନ କରି ଯଥାବିଧି ନୋଟିସ୍ ଦେଇଚି । ଆଜି ତାରିଖରେ ମୋର ଆଠମାସ ଅର୍ଜିତ ଛୁଟି ଅଛି । ସେଥିମଧ୍ୟରୁ ତିନିମାସର ଛୁଟି ଅବସର ପ୍ରସ୍ତୁତିପାଇଁ ମଞ୍ଜୁର କରାଯାଉ । ଏଥିସହ ମୋର ଦାୟିତ୍ୱ ହସ୍ତାନ୍ତର ପତ୍ର ସଂଯୁକ୍ତ ରହିଲା ।

ଏ ଦୁଇଟି ଆଜି ରାତିରେ ନହେଲେ କାଲି ସକାଳୁ ମଣିମା ମାନଙ୍କ ଛାମୁରେ ଦାଖଲ କରିବା ପାଇଁ ମୋର ସହକାରୀ ସାଙ୍ଗେ ସାଙ୍ଗେ ଦରଖାସ୍ତ ଦୁଇଟି ଟାଇପ୍ କରିଦେଲେ ଓ ମୁଁ ପୂରଣ କରିଥିବା ହସ୍ତାନ୍ତର ଦଲିଲ୍‌ଟି ଯୋଡ଼ିଦେଲେ । ଏସବୁ ସରିବାର ପନ୍ଦରମିନିଟ୍ ପରେ ମୋ ରୁମ୍‌କୁ ଶୋଭାଯାତ୍ରା ଛୁଟିଲା । 'କ'ଣ ହେଲା ? କାହିଁକି ?'ର ମୋର ମପାଚୁପା ଉତ୍ତର, 'ଏକାନ୍ତ ବ୍ୟକ୍ତିଗତ କାରଣ । ଦିନେ ଦିଦିନରେ ସପରିବାର ତୀର୍ଥଯାତ୍ରାରେ ଯିବି ।'

ଘଣ୍ଟାକପରେ ହାକିମ ଡ଼କେଇଲେ ।

—ଏ କ'ଣ ଶୁଣୁଚି ?

—ଗୁଜବ୍ ଶୁଣନ୍ତୁ ନାହିଁ । ଆପଣ ବଳେ ଜାଣିବେ ।

—ଭଲକଥା, ତେବେ ବଡ଼ଥିଲେ ପଚାରି, ସାନଥିଲେ ବିଚାରି ଭୁଲିଗଲ ?

—ନା । ସେ ବେଳ ହେଇନି ।

—ତାପରେ ମୋ କୋଠରିକୁ ଫେରି ଅନ୍ୟକାମରେ ମନଦେଲି ।

—ଠିକ୍ ତିନିଟା ବେଳେ ପଶୁପତି ସଂସ୍ଥାନର ନିର୍ଦ୍ଦେଶିକା କୁମାରୀ ଶରଣଙ୍କ କଣ୍ଠ ଶୁଭିଲା -

'ଭିତରକୁ ଆସିପାରେ ?'

'ଆସନ୍ତୁ, ବସନ୍ତୁ, କାଗଜପତ୍ର ଦିଅନ୍ତୁ ।'

ସେ ଆସିଲେ, ବସିଲେ ଓ ତାଙ୍କ ଭେଲ୍‌ଭେଟ୍ ବଟୁଆରୁ କାଗଜପତ୍ର ବାହାର କରି ବଢ଼େଇଦେଲେ ।

ଆମର ପ୍ରତ୍ୟେକ ପ୍ରଶ୍ନର ଉତ୍ତର ପ୍ରାୟ ଏକରକମ -

୧. ନାମ - ପଶୁପତିନାଥ ବୈଷୟିକ ଓ ବୈଜ୍ଞାନିକ ସଂସ୍ଥାନ ।

୨. ଠିକଣା - ପଶୁପତିନାଥ ଆଶ୍ରମ ପରିସର, ଅମୁକ ସହର, ତମୁକ ଜିଲ୍ଲା ।

୩. ଅନୁଷ୍ଠାନର ପଞ୍ଜିକରଣ ହୋଇଛି ବା ନାହିଁ ?

ଦରଖାସ୍ତ ଦିଆଯାଇଛି ।

୪. (କ) ପରିଚାଳନା ସମିତି ଗଠିତ ହେଲାଣି ?

ପଦକ୍ଷେପ ନିଆଯାଉଚି ।

(ଖ) ଗଠିତ ହୋଇଥିଲେ କାର୍ଯ୍ୟକର୍ତ୍ତା ଓ ସଭ୍ୟମାନଙ୍କ ନାମ ଓ ଠିକଣା -

ପ୍ରଧାନ ପୃଷ୍ଠପୋଷକ ଓ ପରାମର୍ଶଦାତା ବିଶ୍ୱଗୁରୁ ବାବା ପଶୁପତିନାଥାନନ୍ଦ ସ୍ୱାମୀଜୀ ମହାରାଜ ।

୫. ନିଜସ୍ୱ ଜମି ଓ ଜମି ବିବରଣ !

ଆଶ୍ରମର ବିଶାଳ ପରିସର । ସେଥିରୁ ଏକ ହେକ୍ଟର ସଂସ୍ଥାନ ନାମରେ କରାଯିବା ପାଇଁ ପଦକ୍ଷେପ ନିଆସରିଛି ।

୬. ନିଜସ୍ୱ ଘର -

ବର୍ତ୍ତମାନ ପାଇଁ ଅସ୍ଥାୟୀଭାବରେ ଆଶ୍ରମର ବଳକା ଘର । ସଂସ୍ଥାନର ନିଜସ୍ୱ ବହୁତଳ ପ୍ରାସାଦର ନକ୍ସା ସଂଯୁକ୍ତ ହେଲା । ଗତକାଲି ମାନ୍ୟବର ମନ୍ତ୍ରୀ ମହୋଦୟଙ୍କ ଦ୍ୱାରା ଏହାର ଶିଳାନ୍ୟାସ ହୋଇଚି । ଚନ୍ଦ୍ରବନ୍ଧନୀ ଭିତରେ ମାନ୍ୟବରଙ୍କ ନାମ ଓ ବିଭାଗର ଉଲ୍ଲେଖ ।

୭. ପରିଷଦ ସ୍ୱୀକୃତି -

ଆବେଦନ କରାଯାଇଛି ।

୮. ଗଚ୍ଛିତ ପାଣ୍ଠି -

ହେବ ।

୯. ନିଯୁକ୍ତ ହୋଇଥିବା ଶିକ୍ଷକ ଓ ସେମାନଙ୍କର ଯୋଗ୍ୟତାର ବିବରଣୀ -

ଶ୍ରୀମତୀ ଶରଣ ନିର୍ଦ୍ଦେଶିକା ଓ ଅଧକ୍ଷା । ଅନ୍ୟମାନେ ପରେ ସ୍ଥାୟୀ ନିଯୁକ୍ତି ପାଇବେ । ବର୍ତ୍ତମାନ ପାଇଁ ନିମ୍ନଲିଖିତ ପ୍ରତିଷ୍ଠିତ ଶିକ୍ଷକମାନେ 'ଅନରାରୀ' ପଢ଼ଉଛନ୍ତି - ତାପରେ ଏକ ଲମ୍ବା ତାଲିକା ।

ମୁଁ କାଗଜପତ୍ର ଦେଖିସାରି କୁମାରୀ ଶରଣଙ୍କୁ ଚାହିଁଲି । ସେ ମୁହଁରେ ହସ ଖେଳେଇ କହିଲେ, 'ଆପଣଙ୍କ ପରିଦର୍ଶନର ପରଦିନ ଆପଣଙ୍କୁ ବହୁତ ଖୋଜିଲି । ପାଇଲି ନାହିଁ । ଆଶାକରୁଚି ଏ ଭିତରେ କେବେ ଆପଣଙ୍କୁ ଅତିଥିଭାବରେ ପାଇବାର ସୁଯୋଗ ମତେ ମିଳିବ । ଆଜି ଆଉ ରହିପାରୁନି, ଦୁଃଖିତ ।'

ଶ୍ରୀମତୀ ଶରଣ ଉଠୁ ଉଠୁ ପୁଣି ବସିପଡ଼ି ଆଉଥରେ ବଟୁଆ ଖୋଲିଲେ । ଦୁଇଟି ସୁଦୃଶ୍ୟ ନିମନ୍ତ୍ରଣ କାର୍ଡ଼ ବାହାର କରି ମତେ ବଢ଼େଇ ଦେଇ କହିଲେ,

'ସଂସ୍କୃତିର ନବଜନ୍ମ' ତରଫରୁ ଏ ନିମନ୍ତ୍ରଣ । ଆମର 'ଆପଣା ଉତ୍ସବକୁ'ନିଶ୍ଚେ଼ ଆସିବେ । ଢ଼େରି ସହଳ କିଛି ନାହିଁ । ରାତିସାରା ଉତ୍ସବ । ଆମର ଆଗକାଳିଆ ମେଳା ମହୋତ୍ସବ ପରି । ସାଙ୍ଗରେ କୌଣସି ବନ୍ଧୁ ବା ବାନ୍ଧବୀଙ୍କୁ (ଅର୍ଥପୂର୍ଣ୍ଣ ମୁରୁକି ହସ ହସି) ଆଣିବାପାଇଁ ଅଧିକଖଣ୍ଡିଏ ନିମନ୍ତ୍ରଣ ପତ୍ରଦେଲି । ନିଶ୍ଚେ଼ ଆସିବେ ।' ମୋ ଉତ୍ତରକୁ ଅପେକ୍ଷା ନକରି ସେ ନିଷ୍କ୍ରାନ୍ତୀ ହେଲେ ।

ମୋ ରିପୋର୍ଟ୍ ଲେଖା ସହଜ କରିଦେଇଥିବାରୁ ଶ୍ରୀମତୀ ଶରଣଙ୍କୁ ମନେ ମନେ କୃତଜ୍ଞତା ଜଣେଇ ରିପୋର୍ଟ୍ ଚିଠାକଲି :

'ପଶୁପତିନାଥ ସଂସ୍ଥାନର ସରକାରୀ ମଂଜୁରୀ ପାଇଁ ଆବେଦନ :

ସଂସ୍ଥାନର ନିର୍ଦ୍ଦେଶିକା ଓ ଅଧକ୍ଷା ବୋଲି ଦାବି କରୁଥିବା ଶ୍ରୀମତୀ ଶରଣ ଏ ଦରଖାସ୍ତ ଆଜି ଓପରଓଳି ତିନିଟାରେ ମତେ ମୋ ଅଫିସ୍‌ରେ ଭେଟି ଦେଇଗଲେ । ଦରଖାସ୍ତ ଓ ବିଭାଗୀୟ ପ୍ରଶ୍ନାବଳୀର ସଂସ୍ଥାନ ପ୍ରଦତ୍ତ ଉତ୍ତରର ମୂଳନଥି ଏଥିସହ ସଂଯୁକ୍ତ ରହିଲା । ସରକାରଙ୍କ ସ୍ୱୀକୃତି ପାଇଁ ରହିଥିବା ସର୍ତ୍ତାବଳୀରୁ କୌଣସି ଗୋଟିଏ ବି ପୂରଣ ହୋଇନଥିବା ଏଥିରୁ ସ୍ପଷ୍ଟ । ତେଣୁ ସ୍ୱୀକୃତିଦେବା ପ୍ରଶ୍ନ ଉଠୁନାହିଁ । ଏହି ଆବେଦନକୁ ନାକଚ କରି, ସର୍ତ୍ତପୂରାଣାନ୍ତେ ପାନି ଆବେଦନ କରିବା ପାଇଁ ସଂସ୍ଥାନ କର୍ତ୍ତୃପକ୍ଷଙ୍କୁ ଜଣାଇଦିଆଯିବା ଆବଶ୍ୟକ । ଏ ସମ୍ପର୍କରେ ଏ ଦପ୍ତରରୁ ସିଧା ନିର୍ଦ୍ଦେଶ ଯାଇଥାଆନ୍ତା । ମାତ୍ର ସରକାର ସବୁ ନଥିପତ୍ର ମଗାଇଥିବାରୁ ସରକାରଙ୍କ ଗୋଚରାର୍ଥେ ଏହା ପଠାଯାଇ ପରବର୍ତ୍ତୀ ନିର୍ଦ୍ଦେଶକୁ.ଅପେକ୍ଷା କରାଯାଉଛି ।'

ପାଞ୍ଚଟାପୂର୍ବରୁ ରିପୋଟ୍ ଟାଇପ୍ ସରିଲା । ସଇ ସନ୍ତକ କରି ହାକିମଙ୍କ କୋଠରିକୁ ଗଲି । ସେ କହିଲେ, 'ଯାଃ, ବଡ଼ ଡ଼େରି କଲହେ ! ଆଜି ସଂଜରେ ଗୋଟେ ଫଙ୍କ୍‌ସନ୍ ଅଛି । ସେପାଇଁ ତିଆରି ହବାକୁ ପଡ଼ିବ । ହଉ, ରିପୋଟ୍‌ଟା ଦେଲ ।

ବଢ଼େଇଦେଲି । ସେ ଆଖିବୁଲେଇ ନେଇ ଷ୍ଟେନୋଙ୍କୁ ଡ଼ିକ୍ଟେସନ ଦେଲେ -

'ମୋ ଅଫିସ୍‌ର ଶ୍ରୀ ମହାଖୁଡ଼ଙ୍କ ରିପୋଟ୍ ସହ ପଶୁପତିନାଥ ସଂସ୍ଥାନର ମଂଜୁରୀ ଦରଖାସ୍ତଟି ତଥା ତତ୍ ସଂଶ୍ଳିଷ୍ଟ କାଗଜାତ୍ ପଠାଉଛି । ମୋ ସହକର୍ମୀଙ୍କ ମତାମତ ଏ ବିଭାଗର ଓ ମୋର ମତାମତ ବୋଲି ଜାଣିବେ ।' ଷ୍ଟେନୋ, ଟାଇପ୍ କରିବାକୁ ଗଲେ । ମୁଁ ବାହାରୁଥିଲି । ହାକିମ କହିଲେ, 'ବସ ।' ସେଠୁ କ'ଣ ଭାବି ସଚିବଙ୍କୁ ଫୋନ୍‌କଲେ । କ'ଣ ଶୁଣିଲେ କେଜାଣି ଷ୍ଟେନୋଙ୍କୁ ଡ଼ାକି କହିଲେ, 'ସେ କାଗଜପତ୍ର ନେଇଆସ ।' ଷ୍ଟେନୋ ସେଗୁଡ଼ିକ ଆଣି ଦିଅନ୍ତେ, ହାକିମ ଦସ୍ତଖତ କରିଦେଇ ସବୁ ନଥିପତ୍ର ଧରି ଉଠିଲେ, 'ଯାଏଁ ନିଜେ ଦେଇଆସେ । ତମେ ଆଉ ଅଗ୍ରୀମ କପି ପଠାଇବା ଦରକାର ନାହିଁ । ମୁଁ ଫେରିବା ଯାଏ ଏଇଠି ଥିବ ।'

ରୁମ୍‌କୁ ଗଲି । ହାକିମ କୋଡ଼ିଏ ମିନିଟ୍‌ରେ ଫେରି ଆସି ମୋ ରୁମ୍‌କୁ ପଶିଆସି ମୋ ସାମ୍‌ନା ଚଉକିରେ ବସିପଡ଼ିଲେ । ବହୁତ ଖୁସି ଦେଖାଯାଉଥାନ୍ତି । ଗୋଡ଼ ଦିଇଟା ଲମ୍ବେଇଦେଇ ଚଉକିରେ ଆଉଜି ବସି କହିଲେ -

'ବଂଚିଗଲହେ ! ସଚିବ ଆଜି ଦାୟିତ୍ୱ ହସ୍ତାନ୍ତର କରୁଚନ୍ତି । ନାନା କଥା ଶୁଣାଯାଉଛି - ନିର୍ବାଚନ ହେଇପାରେ । ତମେ ସେ ଅବସର ଫବସର କଥା ଛାଡ଼ । ହଉ, କାଲି ଦେଖାହେବ ।'

ଜୋତା ଖଟ୍ ଖଟ୍ କରି ସେ ବାହାରିଗଲେ । ଆଜି ଫଙ୍କ୍‌ସନ୍‌ଟା ଉପଭୋଗ କରିବେ ନିଶ୍ଚେ ।

ମତେ ବଡ଼ ମଜା ଲାଗୁଥିଲା । ଏ ବଡ଼ ହାକିମ ଓ ତାଙ୍କଠୁ ବଡ଼ହାକିମମାନଙ୍କୁ ଦୟାହେଲା ।

କେଡ଼େ ନିରିମାଖି ଜୀବଗୁଡ଼ିଏ ! ଏମାନଙ୍କ ଭିତରୁ ଯୋଉମାନେ ମୋ ହାକିମ ମିଶ୍ରଙ୍କ ପରି ମୋଟାମୋଟି ସତ୍ ସେମାନେ କେବଳ ଚାକିରିଟା ବଜାୟ ରଖି, ଚଉକି ଓ ପଦବୀର ଆନୁସଙ୍ଗିକ ଲାଭ ପାଇବାପାଇଁ କି ଅବସ୍ଥା ନ ହେଉଚନ୍ତି ! ନିଜ ଛୋଟିଆ ଚାକିରି ଓ ତାର ଛୋଟବଡ଼ ଗ୍ଲାନିପାଇଁ ବିଶେଷ ଅବ୍‌ଶୋଷ ନଥିଲା ମୋର । ସମସ୍ତେ ଅବଶ୍ୟ ଏ ହାକିମଙ୍କ ପରି ନୁହନ୍ତି । କେତେ ହାକିମ କୌଣସି ସଙ୍କୋଚ ନରଖି ବହୁ ବହୁ ଦୁଷ୍କର୍ମ କରୁଚନ୍ତି । ବିବେକ ବା ନୀତିନିୟମ ତଳିଆଶ୍ରେଣୀ ଜୀବମାନଙ୍କ ଦୁର୍ବଳତା ବୋଲି ସେମାନେ ଭାବନ୍ତି । ଏଭଳି ପ୍ରତ୍ୟେକ ଲୋକ ନିଜକୁ ରାବଣ, ମହିଷାସୁର ବା ହିରଣ୍ୟକଶିପୁ ପରି ବିଶ୍ୱେଶ୍ୱର ବୋଲି ମନେ କରନ୍ତି । ଏମାନଙ୍କ ପାଇଁ ରାମ, ଚଣ୍ଡୀ ବା ନୃସିଂହ ଆସନ୍ତି ନାହିଁ । ବେଳେବେଳେ ତାଙ୍କ କୃତକର୍ମ, ଏବେ କୃଷ୍ଣମୂର୍ତ୍ତି ସାହାବଙ୍କୁ ପକେଇଲାପରି ସେମାନଙ୍କୁ ଖଣାରେ ପକେଇଦିଏ ଯାହା ! ଖଣା ଯେ ଅଛି ସେମାନେ ଜାଣନ୍ତି । ମାତ୍ର ଭାବୁଥାନ୍ତି ଯେ ସେମାନଙ୍କର କିଛି ହବନାହିଁ । ଅବଶ୍ୟ ଖଣାରେ ପଡ଼ିଲେ ବି ବିଶେଷ କିଛି ହୁଏ ନାହିଁ !

ହାକିମ ମୋ କୈଫିୟତ୍‌ଟା ସରକାରଙ୍କୁ ପଠେଇଲେ କି ନାହିଁ ପଚାରି ପାରିଲି ନାହିଁ । ଅବସର ନୋଟିସ୍‌ଟା ସାଙ୍ଗେ ସାଙ୍ଗେ ଦେଇଦବାକୁ ଭାବିଥିଲି । ସେ ସୁଯୋଗଟା ବି ଗଲା । ରାଜନୈତିକ ଘଟ ପରିବର୍ତ୍ତନର ସମ୍ଭାବନା ମନକୁ ଦୁର୍ବଳ କରିଦେଲା । ଚାକିରି, ମାନେ ପଚିଶ ତିରିଶ ବର୍ଷର ଧରାବନ୍ଧା ରୁଟିନ୍ ଜୀବନ ଓ ମାସ ଶେଷର ପଇସା ସାଙ୍ଗକୁ ସରକାରୀ ପଦ ମର୍ଯ୍ୟାଦାର ମୋହ ଭାଙ୍ଗିବା ସହଜ ନୁହଁ । ଜାଣୁଥିଲି ଏ ପଂଝାକ ଯାଇ ଆଉ ପଂଝାଏ ଆସିଲେ ବି ବ୍ୟବସ୍ଥାର ବା ଅବସ୍ଥାର ପରିବର୍ତ୍ତନ ହବନାହିଁ । ଏମିତି ହୁଏବି ନାହିଁ । ତଥାପି ମିଛି ମିଛିକା ମନକୁ ଥାପୁଡ଼େଇ ହୁଏ - ହଁ ମ, କାଳେ ବଦଳିଯିବ ! ତେଣୁ ଅବସର ନୋଟିସ୍ କଥା କାଲି ଦେଖିବା କହି ଆପଣା ବିବେକକୁ ସାନ୍ତ୍ୱନାଦେଇ ଅଫିସ୍ ଛାଡ଼ିଲି । ହଠାତ୍ ଲାଗିଲା-ବଳିଆମାନେ ଲୋପ ପାଇନାହାନ୍ତି । ବ୍ୟାଗଟା ଧରି କୋଠରିରୁ ବାହାରି ଆସିଛି, ଫୋନ୍ ବାଜିଲା ।

ଫେରିବି ନ ଫେରିବି ହେଇ ଶେଷରେ ଫେରିଲି । ଫୋନ୍‌ଟା ବାଜି ଚାଲିଥାଏ । ରିସିଭରଟା ଉଠେଇ ନାଁ କହିବାକୁ ଯାଉଚି ସେପଟରେ କିଏ ଜଣେ କହିବା ଶୁଣିଲି, 'ସେ ଅଫିସ ଛାଡ଼ି ସାରିବଣି କି କ'ଣ ।' ଫୋନ୍‌ଟା ପୁଣି ରଖିଦେଲି । ବସାଆଡ଼େ ମୋହିଁଲି । ଶ୍ରୀମତୀ କିସମିଙ୍କ ନିମନ୍ତ୍ରଣ ମନେ ପଡ଼ିଲା । ସାଙ୍ଗେ ସାଙ୍ଗେ ମଧ ଧୋବଣୀର ଚେତାବନୀ, 'କଞ୍ଚା ଖାଇଯିବ ।' ଭାବିଲି, ଚାକିରି ପାଇଁ ଏମିତି ନିମନ୍ତ୍ରଣଟେ ମିଳିଚି । ଆଜିତ ଚାକିରିର ଶେଷଦିନ । 'ଆପଣା ଉତ୍ସବ' କିମ୍ବିତିକା ଦେଖାଯାଉ ! ବସାରେ ଘରଣୀଙ୍କୁ କହିଦେଇ ବାହାରିଗଲି ।

ହୋଟେଲ ସାମ୍ନାରେ ଗାଡ଼ିଭିଡ଼ । ନାନା କିସମର ଗାଡ଼ି । ବେଶୀ ମାରୁତି । ଖଣ୍ଡେ ଦିଖଣ୍ଡ ବିଦେଶୀ ଗାଡ଼ି । ଦଶଟା ଯାଏ ପ୍ରିମିୟର ପଦ୍ମିନୀ, ଚାରିପାଞ୍ଚଟା ଶୀତତାପନିୟନ୍ତିତ ଚିତଳମାଛ ପରି ଲମ୍ବା, ପେଟ ମୋଟା ଆଉ ଗୁଣ୍ଡୁଣୀ ହାତୀପରି ବାଙ୍ଗର, ଡ଼ିଲକ୍ସ ଗାଡ଼ି । ମନେହେଲା ସହରର ବଡ଼ବଡ଼ିଆମାନେ ଜମିଚନ୍ତି । ଶିଳ୍ପପତି, ସିନେମା ମାଲିକ, ବଡ଼ ବେପାରୀ, ବଡ଼

ହାକିମ, କେଇଜଣ ମନ୍ତ୍ରୀ ଆଉ ମେୟର ବି ଅଛନ୍ତି ହୁଏତ । ଏ ଭିତରେ ମୋପରି ଅଧମ କରିବ କ'ଣ ? ଏମିତି ଭାବିଲେବି, ଏମାନଙ୍କ ସଂସ୍କୃତିର ଢ଼ଙ୍ଗଢ଼ାଙ୍ଗ ସାଙ୍ଗେ ଚିହ୍ନାହେବାର ଲୋଭ ବୁକେଇପଡ଼ିଲା । ଲବିରେ ପଶିଲି । ଶର ମରାହେଇ ବିଜ୍ଞାପନ - ତିନିନମ୍ବର ଉତ୍ସବକକ୍ଷ । ସ୍ୱୟଂଚାଳିତ ଲିଫ୍‌ଟ । ବୋତାମଟିପି ତିନିମହଲାରେ ପହଂଚିଲି । ସେଠିବି ଶର - ଉତ୍ସବ କକ୍ଷ ।

ବାହାରର ସ୍ୱୟଂଚାଳିତ କବାଟ ଠେଲି ଭିତରକୁ ପଶିଲେ ଗୋଟେ ଲମ୍ବା କୋଠରି । ଗୁଡ଼ାଏ ଲକର । ସାଙ୍ଗରେ ଅଣିଥିବା ମୁଣି ଇତ୍ୟାଦି ଲକରରେ ଛାଡ଼ିଯିବା ପାଇଁ ନିର୍ଦ୍ଦେଶ । ଗୋଟେ ଲକରରେ ବ୍ୟାଗଟା ଥୋଇଦେଲି । ଚାବି କାଠି ପାକିଟିରେ ପୂରେଇ ଭିତର କବାଟ ଠେଲିଲି । ଖୋଲିଲା ନାହିଁ । ଦେଖିଲି ଲେଖାହେଇଚି, 'ଟାଣ,' । ଟାଣିଲି । କବାଟ ଖୋଲିଲା । ଗୋଟେ ଛାଇଛାଇ ଅନ୍ଧାରୁଆ ବିରାଟ ବଖରା ଭିତରେ ଧାଡ଼ି ଧାଡ଼ି ବୃତ୍ତାକାରରେ ସଜା ସୋଫା । ଏଇତକ ଦେଖିବା ଭିତରେ ମୋ ହାତକୁ ଜଣେ କ'ଣଟେ ବଢ଼େଇଦେଲା । ଦେଖିଲି ମୁଖାଟେ । ଓଃ ଏଠି ତାହେଲେ ସମସ୍ତେ ମୁଖାପିନ୍ଧି ସଂସ୍କୃତି କରୁଚନ୍ତି । ମୋ ମୁଖାଟା ଗୋଟେ ଗୋଜମୁହାଁ ଜୀବର, ବୋଧହୁଏ ବଳିଆ କୁକୁରର । ହସ ଲାଗିଲା । ମନ୍ଦ ନୁହେଁ । ମୁଖାଟା ବାନ୍ଧିଦେଲି । ଆଖି ଆଗରେ ଦେଖିବା ପାଇଁ ଯୋଡ଼ିଏ ଛୋଟ ଛୋଟ ସରୁ ବାଟ । ପାଟିପାଇଁ ଗାରପରି ଫାଙ୍କ ବକଟେ । କହିବାକୁ ଚାହିଁଲେ ମୁଖା ପଛରୁ କହିବାକୁ ହବ । ମୁଖା ଭିତରେହିଁ ନିଃଶ୍ୱାସନେବାକୁହେବ । ମତେ ରୁନ୍ଧି ଲାଗିଲା । ପୂରା ବାତାବରଣଟା କିମିତି ବେଢ଼ଙ୍ଗିଆ ଲାଗିଲା । ମନକୁ ଆସିଲା କ'ଣ କରୁଚି ମୁଁ ଏଠି, ପଳାଏଁ । ଭିତରୁ କିଏ କହିଲା- ଦେଖିବାକୁ ଆଇଚୁ । ନଇକୂଳରେ ପହଂଚି ଛାନିଆଁ । ଦେଖ୍, କୋଉପାଣି କୁଆଡ଼େ ଯାଉଚି ।' ପଛ ଧାଡ଼ିରେ ଗୋଟେ ସୋଫା ଦଖଲକଲି । ପ୍ରାୟ ସବୁସୋଫାରେ ଦି ଦି ଜଣ । ଚାରି ପାଞ୍ଚଟାରେ ମୋ ଭଳି ଜଣେ ଜଣେ ।

ବହୁତ ନରମ କଳକଳ କଣ୍ଠରେ ଘୋଷଣା ଶୁଭିଲା 'ନମସ୍କାର । ଆୟୋଜକ ମାନଙ୍କ ତରଫରୁ ସମସ୍ତଙ୍କୁ ସ୍ୱାଗତ କରୁଛି । ଏ ଦେଶର ସଂସ୍କୃତି ଆଜି ବିପନ୍ନ । ତେଣୁ ସଂସ୍କୃତିର ପୁନ ର୍ସଂସ୍ଥାପନ ସମସ୍ତଙ୍କର ପବିତ୍ର କର୍ତ୍ତବ୍ୟ । ଏହି ଉଦ୍ଦେଶ୍ୟରେ ଷୋଡ଼ଶ ଶତାବ୍ଦୀର ପ୍ରସିଦ୍ଧ ଓଡ଼ିଆ କବି ନରସିଂହ ସେଣଙ୍କ 'ଗୋପକେଳି' କାବ୍ୟର ଗୋଟିଏ ଦୁଇଟି ନିର୍ବାଚିତ ଅଂଶକୁ ଘେନି ଗୋଟିଏ ସମବେତ ନୃତ୍ୟ ଆୟୋଜିତ ହୋଇଛି । ପୃଷ୍ଠଭୂମିରେ ସଂଗୀତଜ୍ଞମାନେ ଗୀତଗୁଡ଼ିକ ଗାଇବେ ମାତ୍ର ସେମାନେ ନୃତ୍ୟରେ ସାମିଲ ହେବେ ନାହିଁ । 'ଆପଣା ଉତ୍ସବ'ରେ ଭାଗନେଇଥିବା ବଂଧୁ ଓ ବାନ୍ଧବୀମାନଙ୍କୁ ଏହି ସମବେତ ନୃତ୍ୟରେ ଭାଗନେବାପାଇଁ ନିମନ୍ତ୍ରଣ କରୁଛୁ । ରାସୋତ୍ସବରେ ଜଣେହିଁ ନାୟକ । ସେ ସ୍ୱୟଂ ଗୋପାଳ-ଚୂଡ଼ାମଣି ଶ୍ରୀକୃଷ୍ଣ । 'ଷୋଳସହସ୍ର ଗୋପନାରୀ, ମୋତେ ବରିଲେ ତପକରି' କହି ସେ ନିର୍ଭର ପ୍ରତିଶ୍ରୁତି ଦେଇଥିଲେ, 'ମୁଁ ତାଙ୍କ ପୂରାଇବି ଆଶ, ସେ ମୋର ଭକତ ବିଶ୍ୱାସ ।' ତେଣୁ 'ଗୋପୀକେ କୃଷ୍ଣେ' ହିସାବରେ ଯେତେ ଗୋପୀ ସେତେ କୃଷ୍ଣ । ଆଜିର ରଜନୀ ଗୋପକେଳି ରଜନୀ । ସବୁନାରୀ ଗୋପନାରୀ ।

ସବୁ ନର ଗୋପ-କୃଷ୍ଣ । ସେଥିପାଇଁ ସମସ୍ତଙ୍କୁ ମୁଖା ଦିଆଯାଇଛି । ମୁଖାପିନ୍ଧି ନୃତ୍ୟରେ ଅଂଶ ନେବେ । ମଝି ମଝିରେ କ୍ଳାନ୍ତି ଅପନୋଦନ ପାଇଁ ଖାଦ୍ୟ-ପାନୀୟର ବ୍ୟବସ୍ଥା ମଧ ଅଛି । ସବୁ ଏତଦେଶୀୟ । ପାନୀୟ ମୋଟାମୋଟି ପାଚକ - ପାଣି । ଧୂମପାୟୀ ମାନଙ୍କପାଇଁ ଅଲଗା ବ୍ୟବସ୍ଥା ମଧ ଅଛି । ସାଧାରଣ କକ୍ଷକୁ ଲାଗି କେତେଗୁଡ଼ିଏ ସାନ ସାନ ବାତାନୁକୂଳିତ କକ୍ଷ ଅଛି । ଯେତେବେଳେ ଚାହିଁବେ ସେତେବେଳେ ସେଠାକୁ ଯାଇ ଧୂମପାନ କରିବେ । ବେଶୀ କ୍ଳାନ୍ତି ଅନୁଭବ କରୁଥିଲେ ସେଇଠି ବିଶ୍ରାମ କରିପାରିବେ । ମୁଖାରେ ପାଟିପାଇଁ ସାନ ଫାଙ୍କଟିଏ ଅଛି । କଣ୍ଠସ୍ୱର ପରିଷ୍କାର ଜାଣିନହେବା ପାଇଁ ଏପରି ହୋଇଛି ଓ ଏହା ମଧ ଉଚିତ ।' ଘୋଷିକା ଏତିକି କହି ଟିକିଏ ହସିଲେ । ଶ୍ରୋତାମଣ୍ଡଳୀ ଇଙ୍ଗିତଟି ବୁଝିଲେ । ଉତ୍ସବକକ୍ଷରେ ମୃଦୁଗୁଞ୍ଜରଣ ସାଙ୍ଗକୁ କରତାଳି ଧ୍ୱନି ମଧ ଶୁଭିଲା ।

ଠିକ୍ ସେତିକିବେଳେ ଗୀତ ଆରମ୍ଭ ହେଇଗଲା -

ସହସ୍ର କିରଣ ସୁତା ଯମ ନୃପ ଯାର ଭ୍ରାତା
ହିମ ପୁଣ୍ୟ ନୀରବହେ ଗୁଣେ ଅଗଳା
ପିତା ଭ୍ରାତ ଭବ ତାପ ନାଶକରେ ଆପ, ଇହ
ଲୋକ ପରଲୋକ ସୁଖଦଶୀଳା
କୃଷ୍ଣପାଦ ସଙ୍ଗକରି କୃଷ୍ଣର ସଦୃଶ ଧରି
କୃଷ୍ଣରସେ ସମହୋଇ ହରେ ଦୁରିତ
ଯାରତଟେ ନିରନ୍ତର କେଳିକରେ ଦାମୋଦର
ତାହାହେ କିସ ବର୍ଣ୍ଣିବି ମୁଁ ମୂଢ଼ଚିତ ।।

ଘୋଷିକାଙ୍କ କଣ୍ଠ : ଏ ପ୍ରଥମ ଦୁଇପଦକୁ ନରସିଂହ ସେଣ ଯମୁନା ବର୍ଣ୍ଣନା 'ଗାହା' ବୋଲି କହିଛନ୍ତି । ଗାହା ପରେ ପରେ ଆରମ୍ଭ ହୋଇଛି କବିଙ୍କର ଯମୁନା- ବର୍ଣ୍ଣନା 'ବୋଲି ।' ଏହାର ପ୍ରଥମ ସାତଟି ପଦରୁ ସମଗ୍ର ବୋଲିଦ୍ୱାରା ରଚିତ ହୋଇଥିବା ପୃଷ୍ଠଭୂମି ଅନୁମାନ କରିହେବ ।

ଯମୁନା ନଦୀ ଅତି ଉତ୍ତମ ଶୀତଳ ପାତଳ ନୀର —
ଭିନ୍ନ ଅଂଜନ ଯେସନେ ଶୋଭା ଅତିଅନ୍ତ ଗମ୍ଭୀର ।।୧।।
ମେଦନୀରାମା ମେଲି ଅଛିକି କୁଟିଳ କୁନ୍ତଳ ପାଶ
ତରଙ୍ଗଭଙ୍ଗେ କୁଞ୍ଚିତ ଦିଶଇ ବିଶେଷେ କୁସୁମବାସ ।।୨।।
ଦେହ ମନୋଭବ ସନ୍ତାପ ନାଶଇ ଯେସନେ ନବ କାମେନୀ
ଚନ୍ଦ୍ରକାନ୍ତେ କରି ଶୋଭା ପାଉଅଛି ଯେସନେ ମଧୁ ଯାମେନୀ ।।୩।।
ଯୁବତୀ ଅଧର ତେସନ ଜାଣି ଅମୃତ ରସ ବହେ

ତରଳଭଙ୍ଗୀ ଅପାଙ୍ଗ ଯେସନ ସର୍ବଭୂତ ମନ ମୋହେ ।।୪।।
ପ୍ରମଦା ଜନର ଲାଭି ଯେସନ ଅତିଅନ୍ତ ଗଭୀର
ସୁବୋଧ ନାଗର ଭାବ ଯେସନ ସୂକ୍ଷ୍ମଭାବେ ମନୋହର ।।୫।।
ନାଗରେ ନାଗରୀ ଯଉବନ ଦେଇ ଯେସନେ ହୃଦୟ ତୋଷେ
ଆରବେଳେ ସେ ନଉଟଇ ନାହିଁ, ନାହିଁ ଯାହା ମନରସେ ।।୬।।
ନାଗର ସାଗର ସଙ୍ଗ ନିମନ୍ତେ ହୋଇଅଛି ଅଭିସାରୀ
କୋକନଦ ଛଳେ କି'ସେ ଯମୁନା ହୃଦରେ ସରାଗ ଧରି ।।୭।।'

ଆପଣମାନେ ରସିକ-ରସିକା । ଆପଣମାନଙ୍କୁ ଅଧିକ କିଛି କହିବା ନିଷ୍ପ୍ରୟୋଜନ । 'ମୁଖା' ଆପଣଙ୍କ ମୁଖକୁ ଗୋପନକରି ହୃଦୟକୁ ଉନ୍ମୋଚନ କରିଛି ।

ଏ ରଜନୀ ସୁଖା ବହ ହେଉ । ଆପଣମାନେ ପୂର୍ଣ୍ଣ ମନସ୍କାମ ହୁଅନ୍ତୁ । ମନୋଭବ ଅତନୁ, ତନୁ ଲଭନ୍ତୁ ।

ଏହାପରେ ପରେ ସଂଗୀତ ବଦଳି ଗଲା । ଆଉ ଜଣେ ଘୋଷିକାଙ୍କ କଣ୍ଠ ଶୁଭିଲା ।

ରାସନୃତ୍ୟ ଆରମ୍ଭ ହେଉଛି । ନରସିଂହଙ୍କ ଭାଷାରେ,

ସକଳଯୁବତୀ ସହିତେ କୃଷ୍ଣ କାମଦେବ ଉତ୍ସୁକ ଚିତ୍ତ ।
ରାସକେଳି ରସେ ବିବିଧ ଭାବେ ମଣ୍ଡଳି ରଞ୍ଚିଲେ ତ୍ୱରିତ ।'

ଆପଣମାନେ ବର୍ତ୍ତମାନ ମଣ୍ଡଳି - ରଚନା କରନ୍ତୁ ।

ମଣ୍ଡଳି-ରଚନା ପାଇଁ ମୁଖାପିନ୍ଧା ନରନାରୀ ଆଗେଇ ଗଲେ । ଆଲୁଅ - ସ୍ତିମିତ ହେଲା । ସେଇ ସୁଯୋଗରେ ମୁଁ ସୋଫା ଛାଡ଼ି ଠିଆ ହେଇପଡ଼ି କିମିତି କୋଉବାଟେ ବାହାରିଯିବି ଭାବିହେଲା ବେଳକୁ ମୋ ଦିକଡ଼ର ଦୁଇଟି ରୁମ୍‌ରୁ ଦିଜଣ ମୋ ଆଡ଼େ ଆଗେଇ ଆସିଲେ । ଉଭୟେ ମୋରି ଭଳି ବଳିଆ-ମୁଖା ନାଇଥାନ୍ତି । କାମୁଫ୍ଲେଜ୍ ପାଇଁ ଛପି-ଛପିକା ଶାଗୁଆ ରଙ୍ଗର ପେଣ୍ଟ-ଜାମା ପିନ୍ଧିଥାନ୍ତି । ମୁଣ୍ଡରେ 'ବେରେ' ଟୋପି । ଏଠି ସୈନ୍ୟବାହିନୀ ଲୋକେ ଯୋଉଥିପାଇଁ ଥାଆନ୍ତୁ, ମୋ ପାଖକୁ କାହିଁକି ଆସୁଚନ୍ତି ଓ ମୋର କର୍ତ୍ତବ୍ୟ କ'ଣ ଚିନ୍ତାକଲା ବେଳକୁ ଅନୁଚ୍ଚ ଓ ଅସ୍ପଷ୍ଟ ନାରୀକଣ୍ଠ ଶୁଭିଲା । ଆରେ, ଏତ ଧୋବଣୀ ବୋଲି ଟିକିଏ ଆଶ୍ୱସ୍ତ ହେଲାବେଳକୁ ଶୁଣିଲି, 'ତୋ ସେପଟେ ମଧୁ । ଆମେ ପଛ ଦରଜା ହେଇ ହୋଟେଲର ପଛପଟ ଲମ୍ବା ବାରଣ୍ଡାକୁ ଯିବା ।' ମଧୁବାବୁ ଆଗେଇଯାଇ କବାଟଟା ଫିଟେଇଦେଲେ । ଧୋବଣୀ କହିଲା, 'ତା ପଛେ ପଛେ ଚାଲ । ମୁଁ ତୋ ପଛରେ ଯାଉଚି ।' ତିନିହେଁ ବାରଣ୍ଡାରେ କିଛିବାଟ ଗଲାପରେ ଧୋବଣୀ କହିଲା, 'ଏ ପିଣ୍ଡାର ଶେଷ ମୁଣ୍ଡରେ ହୋଟେଲ୍‌ର ଆପଦକାଳୀନ ଘୂରା ଶିଡ଼ି । ସେଇ ଶିଡ଼ିରେ ଓହ୍ଲେଇ ଆମେ ହୋଟେଲ ପଛର ସର୍ଭିସ-ଗଳିରେ ପହଂଚିବା । ଗଳି ଆରପଟେ ଗୋଟେ ଏକମହଲା ଘର ଆମର ଲକ୍ଷ୍ୟ । ତୁ ଅଯଥା ଧନ୍ଦି ହୋ ନା । ସେଠି ପହଂଚି

ଛାଏଁ ଛାଏଁ ସବୁ ପରିଷ୍କାର ହୋଇଯିବ ।'

—ତା ହୁଏତ ହବ । ମାତ୍ର ଶାଢ଼ିଛାଡ଼ି କୋଉ ଗରଜରେ ପେଣ୍ଟ-ଜାମା ପିନ୍ଧିଚୁ ତୁ ?

—ଦୁଇଟି । ପ୍ରଥମେ ଅନ୍ୟମାନଙ୍କଠାରୁ ଅଲଗା ବୋଲି ବାରିହବା ଓ ଦ୍ୱିତୀୟ, ହଠାତ୍ ଲଢ଼େଇ ଝଗଡ଼ା ଲାଗିଗଲେ ଅସୁବିଧାରେ ନପଡ଼ିବା ।

—ଝଗଡ଼ାରେ ତ ପୋଷାକ ବାଧକ ହବାକଥା ନୁହେଁ । ବାକି ରହିଲା - ଲଢ଼େଇ । ମାତ୍ର କାହା ସାଙ୍ଗରେ ? ପୁଣି ତୁ କିଏ ଲଢ଼େଇ କିଏ ?

ମଧୁବାବୁ କହିଲେ, 'ନାଟୁବାବୁ, ସେ ଘରେ ପହଂଚିବାଯାଏ ଏ ଆଲୋଚନା ମୁଲତବି ରହୁ ।' ଶିଡ଼ି ହୋଇଯାଇଥିଲା ସେତେବେଳେକୁ । ଚୁପ୍‌ଚାପ୍ ଓହ୍ଲେଇ ପଛପଟ ଗଳିପାରେଇ ଦେଖିଲା ବେଳକୁ ସେ ପଟର ଏକମହଲା ଘର ସାମ୍ନାରେ ଚାରିଜଣ ଜଗୁଆଳି । ସେମାନଙ୍କର ବି ସୈନିକ-ପୋଷାକ । ତାଙ୍କଭିତରୁ ଜଣେ ସଦର ଦରଜା ଫିଟାଇଦେଲା । ଆମେ ଭିତରକୁ ଗଲୁ । ଆମ ପଛେ ପଛେ କବାଟ ବନ୍ଦହେଲା । ଭିତରେ କୋଡ଼ିଏ ପଚିଶଜଣ ବସିଥିଲେ । ସମସ୍ତଙ୍କର ସୈନିକ – ପୋଷାକ । ମଧୁବାବୁଙ୍କୁ ଦେଖି ସମସ୍ତେ ଛିଡ଼ାହେଇପଡ଼ି ସାଲ୍ୟୁଟ୍ କଲେ । ମଧୁବାବୁ ପଚାରିଲେ, 'ଶୋଲାଙ୍କି, ଜିରୋ ଆୱାରକୁ କେତେ ସମୟ ରହିଲା ?' ଜଣେ ଜବାବଦେଲେ, 'ଏଇନା ଆଠଟା ହେଲା ସାର୍ ।'ମଧୁବାବୁ କହିଲେ, 'ତା'ମାନେ ଠିକ୍ ତିନିଘଣ୍ଟା । କ'ଣ ଆଉଥରେ ରିହର୍ସାଲ ଦରକାର ?'

ଶୋଲାଙ୍କି କହିଲେ, 'ଗତ ପାଞ୍ଚଦିନରେ ପଚାଶଥର ରିହର୍ସାଲ ସରିଚି । ଆପଣ ଆଉ ମାଡ଼ାମ୍ ମଧ ଆପଣମାନଙ୍କ ବନ୍ଧୁଙ୍କସହ ସୁରୁଖୁରୁରେ ଆସିଯାଇଚନ୍ତି । ଏବେ ଆଉ ତିନିଜଣଙ୍କୁ ଅପେକ୍ଷା ।'

ଧୋବଣୀ କହିଲା, 'ନାଟୁ, ମଧୁ ସୀମାସୁରକ୍ଷାବାହିନୀର ଇନ୍ସପେକ୍ଟର ଜେନେରାଲ । ଶୋଲାଙ୍କି ତାର ଡେ଼ପୁଟି । ମୁଁ କେନ୍ଦ୍ରୀୟ ମାଦକ ଦ୍ରବ୍ୟନିରୋଧୀ ସଂଗଠନର ଆଞ୍ଚଳିକ ନିର୍ଦ୍ଦେଶକ ।'

ଶୋଲାଙ୍କି କହିଲେ, 'ଆପଣମାନେ ବସିପଡ଼ି କଥାହେଲେ ଭଲ ହୁଅନ୍ତା ପରା !'

'ନିଶ୍ଚୟ ହୁଅନ୍ତା କହି ମଧୁବାବୁ ମତେ ଟାଣିନେଇ ରୁମର ଗୋଟେ କଣରେ ବସେଇଦେଇ ନିଜେ ବସି ପଡ଼ିଲେ । ଧୋବଣୀ ମଧ ଆସି ଆମକୁ ସାମ୍ନାକରି ବସିଲା ।

ମଧୁବାବୁ କହିଲେ, 'ଏ ଅପରେସନ ସଦ୍ଧର ଦାୟିତ୍ୱ ।'

ଧୋବଣୀ ପ୍ରତିବାଦ କଲା, 'ନା, ଦୁହିଙ୍କର ମିଳିତ ଦାୟିତ୍ୱ ।'

ଶୋଲାଙ୍କି କହିଲେ, 'ସ୍ୱାମୀ-ସ୍ତ୍ରୀଙ୍କି ମିଳିତ ଦାୟିତ୍ୱଦେଇ ସରକାର ଭୁଲ କରିଚନ୍ତି ନା ଠିକ୍ କରିଛନ୍ତି, ଏଇନା କୁହାଯାଇ ପାରିବ ନାହିଁ । ମାତ୍ର ଯାହାହେଲେବି, ବରିଷ୍ଠତା ହିଁ ଦାୟିତ୍ୱ ତଥା ନିର୍ଦ୍ଦେଶନାର ନିର୍ଣ୍ଣାୟକ ହୋଇଥିବାରୁ ଶ୍ରୀମତୀ ସିଂହ ହିଁ ଅପରେସନ ଦାୟିତ୍ୱରେ ଥିବାକଥା ଆମେ ଜାଣୁ ।'

ମଧୁବାବୁ ଠିଆହେଇପଡ଼ି ଗୋଟେ ଜବର ସାଲ୍ୟୁଟ୍ ଠୁକିଦେଲେ ଧୋବଣୀକି ।

ଧୋବଣୀ କହିଲା, 'ଶୋଲାଙ୍କି, ଅପରେସନପରେ ଆମେ ସମସ୍ତେ ଅନ୍ତତଃ ସାତଦିନ ଛୁଟି ନେବୁ, କେବଳ ତମଛଡ଼ା । ତମେ ମକଦ୍ଦମାର ନଥିପତ୍ର ତିଆରିକରିବା ପାଇଁ ଆଜି ହୁକୁମନାମା ଆସିଚି । ଏଯାଏ ତମକୁ ଜଣେଇ ନଥିବାରୁ ମୁଁ ଦୁଃଖିତ । ମୁଁ ଅବଶ୍ୟ ସାଠେକୁ ଏ ଦାୟିତ୍ୱ ସଁପିବାକୁ ପରାମର୍ଶ ଦେଇଥିଲି । ମାତ୍ର ମୋ ଡ଼ିରେକ୍ଟର ମୁଖର୍ଜୀ ଓ ତମ ଡ଼ିରେକ୍ଟର ଜେନେରାଲ ଶର୍ମା, ତମ କୁହିଁ ଦାୟିତ୍ୱଦେବାକୁ ଠିକ୍ କଲେ ।'

ଶୋଲାଙ୍କି ଠିଆହେଇ ଟିକିଏ ବାଓ କରି କହିଲେ, 'ହୁକୁମ ତାମିଲ୍ ହେବ ମାଡ଼ାମ୍ ।'

ପଚାରିଲି, ସଂସ୍କୃତିର ନବଜାଗରଣ, ନୂଆକଲେଜ ପ୍ରତିଷ୍ଠା ଇତ୍ୟାଦି ସାଙ୍ଗରେ ମାଦକଦ୍ରବ୍ୟ ନିରୋଧ ସଂଗଠନ ବା ସୀମାସୁରକ୍ଷା ବାହିନୀର ସଂପର୍କ କ'ଣ ?'

ଧୋବଣୀ କହିଲା, 'ବ୍ୟସ୍ତ ହଉଚୁ କାହିଁକି ? ଆମେ ଅପେକ୍ଷା କରୁଥିବା ତିନିଜଣ ଆସିଯାନ୍ତୁ । ସବୁ ଶୁଣିବୁ । ନହେଲେ 'ଦାସେ ଆଇଲେ ମୂଳରୁ ଗା'  ଭଳି ହେଇଯିବ !'

ଧୋବଣୀ କଥା ସରିଲାବେଳକୁ ସଦର ଦରଜା ଖୋଲିଗଲା । ଆମ ହାକିମ ଦୁଇଜଣ ସୈନିକଙ୍କ ସହ ରୁମକୁ ପଶିଆସିଲେ । ଧୋବଣୀ ସ୍ୱାଗତ କଲା, 'ଆସନ୍ତୁ ସାର୍ । ଆପଣଙ୍କୁ ତ ବଳିଆ ମୁଖାଟେ ଦିଆଯାଇଥିଲା, ସେଟା ବଦଳେଇ ବାଘମୁଖାଟା କେତେବେଳେ ପିନ୍ଧିଲେ ? ଆଉ ଟିକିଏ ଡ଼େରି ହେଇଥିଲେ ଆପଣଙ୍କୁ ବଞ୍ଚାଇପାରିନଥାନ୍ତୁ ଆମେ !'

ହାକିମ କହିଲେ, 'ବଳିଆମୁଖା ଅପେକ୍ଷା ବାଘମୁଖା ବେଶୀ ଆକର୍ଷଣୀୟ ମନେହେଲା ବୋଲି ଜଣଙ୍କ ସାଙ୍ଗରେ ବଦଳେଇ ଦେଲି । ସେ ଭଦ୍ରଲୋକ ମହାଖୁଡ଼ ଦେଇଥିବା ବକ୍ତୃତାରୁ ବଳିଆଙ୍କ କଥା ଶୁଣି, ନିଜକୁ ବଳିଆ ବୋଲି ବିଚାରୁଥିଲେ !'

ଶୋଲାଙ୍କି କହିଲେ, 'ଆଉ ହାକିମ ବୋଲି ଆପଣ ନିଜକୁ ବାଘ ବିଚାରିଲେ !'

ମଧୁବାବୁ କହିଲେ, 'ଛାଡ଼, ଶୋଲାଙ୍କି । ଯା ହେବାର ହେଲାଣି । ଶ୍ରୀ ମିଶ୍ର ଅସଂପୃକ୍ତ ଲୋକ । ବୁଦ୍ଧି-ବିଚାର ମଧ ଭଲ । ତାଙ୍କର ଗୋଟିଏ ମାତ୍ର ଦୁର୍ବଳତା ଓ ସେଇ ଦୁର୍ବଳତାକୁ ଆୟୁଧକରି ତାଙ୍କୁ ଏମାନେ ବୁଡ଼େଇବାକୁ ବସିଥିଲେ । ତେବେ ନିଜର ଦୁର୍ବଳତାକୁ ସେ କେବେହେଲେ କର୍ତ୍ତବ୍ୟସାଙ୍ଗରେ ମିଶେଇ ନାହାନ୍ତି ଓ ତାହାହିଁ ତାଙ୍କୁ ରକ୍ଷାକରିଛି । ମିଶ୍ର ସାହେବ, ଆପଣ ଆଶ୍ଚର୍ଯ୍ୟ ହଉଥିବେ । ପ୍ରଥମେ ଆମ ପରିଚୟ ଦିଏଁ ।'

ସେଠୁ ମଧୁବାବୁ ନିଜର, ଧୋବଣୀର ଓ ଶୋଲାଙ୍କିଙ୍କ ପରିଚୟ ଦେଇସାରି କହିଲେ, 'ଏ ରୁମ୍‌ରେ ନାଟୁବାବୁ, ଆପଣ ଓ ଆମ ତିନିଙ୍କଛଡ଼ା ଆଉ ମୋଟ ତିରିଶି ଜଣ ଅଛନ୍ତି । ସେମାନେ ବଡ଼ସାନ କ୍ରମରେ ଶୋଲାଙ୍କି ତଳେ ଦଶ, ସେ ଦଶ ତଳେ ଜଣକା ଦୁଇଲେଖାଏ କୋଡ଼ିଏ ଜଣ । ସେ କୋଡ଼ିଏ ଜଣଙ୍କ ଅଧୀନରେ ସର୍ବମୋଟ ଚାରିଶ ସୁରକ୍ଷା - ସୈନିକ । ସୁରକ୍ଷା ସୈନିକମାନେ ଏ ଘର, ହୋଟେଲ ଓ ହୋଟେଲ ଚାରିକରର ରାସ୍ତାରେ ପହରା ଦେଉଛନ୍ତି ।

ସେମାନଙ୍କ ସହାୟତା ପାଇଁ ରାଜ୍ୟ ସରକାରଙ୍କର ଦୁଇହଜାର ସଶସ୍ତ୍ର ପୁଲିସ ମୁତୟନ ହୋଇଛନ୍ତି । ଏଠାକୁ ଆସିଥିବା ସବୁ ଗାଡ଼ି ଜବତ୍ ହେଲାଣି । ଠିକ୍ ଏଗାରଟାରେ ଶୋଲାଙ୍କିଙ୍କ ବାହିନୀ ଭିତରେ ପଶି ସମସ୍ତଙ୍କୁ ଗିରଫ କରିବେ । ସେତେବେଳକୁ ବାବୁ ବାବୁଆଣୀମାନେ କି ଅବସ୍ଥାରେ ଥିବେ ଆପଣ ଅନୁମାନ କରିପାରୁଥିବେ । ଆମର ସର୍ବଶେଷ ଖବର ଅନୁସାରେ ସ୍ୱାମୀ ପଶୁପତିନାଥାନନ୍ଦ ମହାରାଜ, ତାଙ୍କର କୋଡ଼ିଏଜଣ ଜୋବା-ପଗଡ଼ିଧାରୀ ଅଙ୍ଗରକ୍ଷୀ, ସ୍ୱାମୀଜୀଙ୍କର ସହକାରୀ ତଥାକଥିତ ସୁପର କମ୍ପ୍ୟୁଟର ଇଂଜିନିୟର କ୍ୟାସି ଡ଼ାଏସ୍ ଓରଫ କୃଷ୍ଣଚନ୍ଦ୍ର ଦାସ ଓ ତାଙ୍କ ସହକାରୀ କିସ୍‌ମି ଶରଣ ସ୍ୱାମୀଜୀଙ୍କ ମଠରେ ଅଛନ୍ତି । ଗୋବିନ୍ଦ ଶରଣ ନିଜଘରେ ଅଛନ୍ତି । ଗୋବିନ୍ଦଙ୍କ ସହକାରୀମାନେ ଏଠାକାମ ଦାୟିତ୍ୱରେ ଅଛନ୍ତି । ମୁଖା ଆବଣ୍ଟନରୁ ଜଣା ଯାଇଛି ଯେ ଏ ହୋଟେଲ୍‌ରେ ଦୁଇଶ ପୁରୁଷ ଓ ଅଢ଼େଇଶ ନାରୀ ଅଛନ୍ତି । ମାତ୍ର ସେମାନଙ୍କ ଭିତରେ ମାତ୍ର ଦେଢ଼ଶ ଦମ୍ପତି । ଅନ୍ୟମାନେ ଉଦାଖିଆ ଓ ଉଦାଖାଇ । ପୁରୁଷମାନଙ୍କ ଭିତରେ ସରକାରଙ୍କ ବିଭିନ୍ନ ବିଭାଗର ଶଏଜଣ ଯାଏ ପଦସ୍ଥ ଅଧିକାରୀ ଅଛନ୍ତି । ଅନ୍ୟମାନେ ଅଧ୍ୟାପନା ଓକାଲତି, ଠିକାଦାରି, ଡ଼ାକ୍ତରୀ, ସାମ୍ବାଦିକତା, ବ୍ୟବସାୟ ଆଦି କ୍ଷେତ୍ରରେ କର୍ମରତ । ସମସ୍ତଙ୍କ ଭିତରେ ସାଧାରଣ ଯୋଗସୂତ୍ର ହେଲା ନିଶା-ସେବନ ଓ ...'

ମଧୁବାବୁ ବାକ୍ୟ ପୂରା କରିବା ଆଗରୁ ମିଶ୍ରେ କହିଲେ, 'ଆପଣ ଆଉ କହିବା ଦରକାର ନାହିଁ ! ନିଜକୁ ପୁରୁଷର୍ଷଭ ବିଚାରୁଥିବା ଲୋକ କମ୍ ନାହାନ୍ତି ଏ ଦେଶରେ !'

ସେତିକିବେଳେ ହଠାତ୍ ସଦର ଦରଜା ଖୋଲିଗଲା । ଜଣେ ଅଫିସର ଭିତରକୁ ଆସି କହିଲେ, 'ମାଡ଼ାମ୍, ପଶୁ, ଡ଼ାଏସ ଓ କିସମି ଶରଣ କିମିତି ସୁରାଖ ପାଇ ଅଙ୍ଗରକ୍ଷୀମାନଙ୍କ ସହ ଦଶଟି ଗାଡ଼ିରେ ବସି ପଳାଇଲାବେଳକୁ ନାସନାଲ ହାଇୱେରେ ପହଞ୍ଚିବା ପୂର୍ବରୁ ଗାଡ଼ି ଗୁଡ଼ିକ ହଠାତ୍ ବନ୍ଦହୋଇଗଲା । ଅଙ୍ଗରକ୍ଷୀମାନେ କ'ଣ ହେଲା ଦେଖିବାକୁ ଓହ୍ଲାଇଲା ବେଳକୁ ସୀମାସୁରକ୍ଷା ବାହିନୀର ଜବାନ୍‌ମାନେ ସେମାନଙ୍କୁ କାବୁକରିନେଲେ । ପଶୁ ଆଦି ତିନିହେଁ ଦଉଡ଼ି ଦଉଡ଼ି ପଳେଇଲା ବେଳକୁ ମଧ ଧରାପଡ଼ିଲେ । ଏଇନା ମାତ୍ର ନଅଟା । ସହରରେ ନାନାଧରଣର ଗୁଜବ ବ୍ୟାପିଗଲାଣି, ତେବେ କେହି ହୋଟେଲ ଭିତରକୁ ପଶିନାହାନ୍ତି । ମ୍ୟାନେଜମେଣ୍ଟଙ୍କ ସହାୟତାରୁ ସବୁ ଗେଟ୍ ତାଲା ଓ କିଳିଣିରେ ବନ୍ଦହେଇଛି । ଏଗାର ଯାଏ ଅପେକ୍ଷା କରିବା ନା ଜିରୋ ଆୱାରକୁ ନିକଟତର କରିବା ?'

ଧୋବଣୀ କହିଲା, 'ନା, ଏଗାରଟାରେ ହିଁ ହୋଟେଲରେ ପଶିବା । ତେବେ ଏ ତିନି ଆସାମୀଙ୍କ ଗିରଫଦାରି କଥା ଶୋଲାଙ୍କି ଆମ ନିର୍ଦ୍ଦେଶକମାନଙ୍କୁ ଜଣାଇ ଦିଅନ୍ତୁ । କେନ୍ଦ୍ର ଓ ରାଜ୍ୟରେ କାହାକୁ କାହାକୁ କୋଉ ଖବର କେତେ ଦିଆଯିବ, ନିର୍ଦ୍ଦେଶକମାନେ ଠିକ୍ କରନ୍ତୁ ।'

ମିଶ୍ରେ ପଚାରିଲେ, 'ଆମ ମନ୍ତ୍ରୀ କୋଉଠି ?' ଧୋବଣୀ ମୋ ଆଡ଼େ ହାତ ଦେଖେଇ କହିଲା, 'ନାଟ୍ଟକୁ ପଚାରନ୍ତୁ ।' ହାକିମ ମୋତେ ଅନାନ୍ତେ କହିଲି, 'କୋଉଠି ଆଉ ? ଏଇ

ହୋଟେଲ୍‌ରେ ।'

'ମୁଁତ କୌଣସି ଖଦଡ଼ଧୋତି ଜାମା ଦେଖି ନାହିଁ, ' ବୋଲି ମିଶ୍ରଙ୍କ ମନ୍ତବ୍ୟ ଜବାବରେ କହିଲି, 'ସାର୍, ଆପଣଙ୍କ ଆଜିର ବୁଦ୍ଧି ବୈକଲ୍ୟରେ ବିସ୍ମିତ ହଉଚି । ଆପଣ ମନ୍ତ୍ରୀ କିସମି ସହିତ ଥିବେ ବୋଲି ଧରିନେଇଚନ୍ତି । ମନ୍ତ୍ରୀ ମାଂସାଶୀ । କୁକୁଡ଼ାରୁ ଘୁଷୁରୀ ସବୁ ଚଳୁଥିବ । କିସମି ବାସ୍ତବରେ କୋରିଆର ନାରୀ-କୁକୁର । ସେ ମାଂସର ଗରାଖ ନିଆରା, ସ୍ୱାଦବି ଭିନେ । ଶାସନୀବ୍ରାହ୍ମଣଙ୍କୁ ପୋଷେଇବ ନାହିଁ । ସାନ କୁରଙ୍ଗୀ ଏମିତି କି ଖାସିଟିଏ ହେଲେ ଭଲ ।'

ମଧୁବାବୁଙ୍କ ହୋ ହୋ ହସ  ଭିତରେ ଧୋବଣୀ କହିଲା, 'ନାଟୁ, ତୋର ଇନ୍‌ଟୁଇସନ ସବୁକାଳେ ତାରିଫ ଯୋଗ୍ୟ, ମାତ୍ର ତୋର ଶବ୍ଦ ନିର୍ବାଚନ ଅତି ବେଆଡ଼ା ।'

'ଆଛା କହିଲୁ, ତୋ ପତିଦେବ ଏମିତି ହସିଲେ କାହିଁକି ?'

'ତୋ'ରି ପରି ବେହିଆ ବୋଲି ।'

ମିଶ୍ରେ କହିଲେ, 'ତମମାନଙ୍କ କଥାବାର୍ତ୍ତାରୁ କିଛି କିଛି ଅନୁମାନ କରିପାରୁଛି ଯେ, ମୋ ପ୍ରଶ୍ନର ଉତ୍ତର ଏବେବି ପାଉନାହିଁ ।'

'ଆଛା, ଏଇଠି । ଗେରୁଆ ସିଲ୍‌କ ଧୋତି-ପଞ୍ଜାବୀ, ଗେରୁଆ କାନଢଙ୍କା ଟୋପି ଓ ଗଧିଆ ମୁଖା । ସମ୍ଭବତଃ ମଣ୍ଡଳବାହାରେ, ଆଉ ଏକ ସାନ ମେହଫିଲରେ ।'

ଧୋବଣୀ ତା ଜାଗାରୁ ମୋ ପାଖକୁ ଚାଲିଆସି ମୋ କାନରେ ଫିସ୍ ଫିସ୍ ହେଇ କହିଲା, 'ଶହେରୁ ଶହେ ଠିକ୍ ।'ସେଠୁ ବଡ଼ ପାଟିରେ ପଚାରିଲା, 'ଅବସର ନଉଚୁ ପରା ! ମୋ ପାଖରେ କାମ  କରିବୁ ? ଆମ ସଂଗଠନରେ ? ପଦବୀ - କନସଲ୍‌ଟାଣ୍ଟ ଓ ଆନାଲିଷ୍ଟ । ଦରମା, ବିଶ୍ୱବିଦ୍ୟାଳୟ ପ୍ରଫେସରଙ୍କ ଦରମା । ବାହାରକୁ ପରିଚୟ, 'ପ୍ରଫେସର ଏମେରିଟସ ସ୍କୁଲ ଅଫ ସାଇକୋଲଜିକାଲ ଇନିସିଏଟିଭ୍ ଏଗେନ୍‌ଷ୍ଟ ଡ୍ରଗ୍‌ସ' ମାନେ ......'

କହିଲି, 'ଇଂରେଜୀରେ ପେସୋପିଆଡ଼, ହିନ୍ଦୀରେ ପପେୟା, ଓଡ଼ିଆରେ 'ଅମୃତ' । ରାଜି, ମାତ୍ର ସାର୍ ସରକାରଙ୍କ ପାଖକୁ ଅବସର ଅର୍ଜିଟା ପଠେଇଲେ ସିନା ।'

'ପଠେଇବେ । କାରଣ ସେ ଆଉ ଦିମାସରେ ଅବସର ନେବେ ଓ ଆମ ନୂଆ ସ୍କୁଲର ଅଧ୍ୟକ୍ଷ ହେବେ । ପ୍ରଫେସର ସ୍କେଲ୍‌ରେ ଦରମା ଉପରେ ସ୍ପେଶାଲ ଆଲୋଆନ୍ସ ମାସିକ ପାଞ୍ଚଶ । ଦୁହିଁକୁ ମାଗଣା ଘର, ଗାଡ଼ି, ଫୋନ୍, ପାଣି ଓ ବିଜୁଳି ।'

ମିଶ୍ର ସାର୍ ପଚାରିଲେ, 'ଆପଙ୍କର କି ଲାଭ ହେବ ?'

'ସବୁଠୁ ବଡ଼ ଲାଭ, ଆପଣ ଦୁହିଁକୁ ଏକାଠି ମୋ ସହଯୋଗୀ ଭାବରେ ପାଇବା । ଦ୍ୱିତୀୟ, ଏ ଡ୍ରଗମାଫିଆ ବିରୋଧରେ ଲୋକଙ୍କୁ ସଙ୍ଗଠିତ କରାଇବା ପାଇଁ ବାଟ ବାହାର କରିବା ।'

'ଆମେ ପାରିବୁ ?'

'ଆପଣ ଦୁହେଁ ମିଶିଗଲେ ଅସାଧ ସାଧନ କରିବେ । ନାଟୁର ସହଜାତ ତୃତୀୟ ନୟନରେ

ଅନେକ କଥା ଦିଶେ । ମାତ୍ର ନାଟୁଟା ବଡ଼ ହୁରୁମା । 'ଆପଣ ହୁରୁମା ନୁହନ୍ତି କି ହୁଦସ୍ତ ମାଡ଼ିଯିବା ଲୋକ ନୁହନ୍ତି । ତେଣୁ ଆପଣଙ୍କ ହାତରେ ତା ଚୁଟି ରହିଲେ, ସେ ସବୁକାମ ବୁଝି ବିଚାରି କରିବ ।'

'ତା ହୁଏତ କରିବେ, ମାତ୍ର ବାଟ ବାହାର କରିବେ କିମିତି ?'

ମଧୁବାବୁ କହିଲେ, 'ସାରେ, ଆପଣତ ଗାଁର ପିଲା । ବାରି ବଗିଚା ଥିବ ଗାଁରେ । ବାଡ଼ାବନ୍ଧି ବି ହଉଥିବ । ତଥାପି ଅରଣା ମଇଁଷି କି ମାରଣା ଷେଣ୍ଢ ନହେଲେ ହୁରୁମା ବଳଦ ବାଡ଼ ଭାଙ୍ଗି ଫସଲ କ'ଣ ଉଜାଡ଼ୁ ନଥିଲେ ? ଏ ନାଟୁବାବୁ ....'

'ଏଥିରୁ କୋଉଟି ସିଏ ?'

'ଆପଣ କୁହନ୍ତୁ ।'

'ସବୁ ଗୁଡ଼ିକ ।'

'ତେଣୁ ବାଟ ଫିଟିବା ଅବଧାରିତ । ଆପଣଙ୍କ ହାତରେ ଚୁଟିଟା ଥିଲେ ଘରବାଲାର ଠେଙ୍ଗା ପଡ଼ିବା ଆଗରୁ, ତାଙ୍କୁ ଓଟାରି ଆଣିହବ ।'

ଧୋବଣୀ ହସି ହସି ପଚାରିଲା, 'ତୁହେଁ ଆସିବେତ ?'

ମୁଁ ପଚାରିଲି, 'କୁଆଡ଼େ ?'

'ଦିଲ୍ଲୀ ।'

'ନା, ତୋ ସ୍କୁଲ ଏଇଠି ହବ । ସହରରେ ହଉ କି ମଫସଲରେ ଯୋଉଠି କର ପରଓ୍ୱା ନାହିଁ । ମାତ୍ର ଦିଲ୍ଲୀ ନୈବଚ ନୈବଚ ।'

'ଦିଲ୍ଲୀର ଅପରାଧ ?'

'ଜୀବନ ସାରା ରାଜ୍ୟସରକାର ନାମକ କୁକୁର ଲାଙ୍ଗୁଡ଼ର ସବା ଶେଷ ବାଳହେଇ ରହିଲି । ବିକ୍ରମପୁର ବାବନ ବାବାଙ୍କ ଚେଲା ହେବି ସିନା, ଭାରତସରକାରନାମକ ହାତୀ ନାଙ୍ଗୁଡ଼ର ଚଅଁର ଭିତରୁ ଗୋଟିକିଆ ବାଳଟିଏ ହେବି ନାହିଁ ।'

'ନିର୍ଭର ଜବାବ ଦେଇପାରୁନି । ମନ୍ତ୍ରୀ ମଙ୍ଗିଲେ ବିକ୍ରମପୁର କ'ଣ ବୁଢ଼ା କେନ୍ଦୁଆରେ ବି ଅନୁଷ୍ଠାନଟା କରିହବ ।'

—ତୋର ପା' ମନ୍ତ୍ରିଣୀ ?

—ଆରେ ମୂର୍ଖ, ସ୍ତ୍ରୀଲୋକ ମନ୍ତ୍ରୀ, ଯନ୍ତ୍ରୀ, ସନ୍ତ୍ରୀ ହେଲେ ମନ୍ତ୍ରୀ, ଯନ୍ତ୍ରୀ...

—ଖାଲି ଅଧ୍ୟାପନା କଲେ, ଅଧ୍ୟାପିକା ।

—ଏ ପ୍ରୟୋଗ ବି ଯିବ ।

—ଭଲକଥା, ଯାଉ । ତେବେ ତୋ ମନ୍ତ୍ରୀ କ'ଣ ରାଜିହେବେ ନାହିଁ ?

–ରାଜିହେବେ । ତେବେ ସାର୍‌ ଚେଷ୍ଟାକଲେ ।

–ଓ, ବୁଝିଲି । ପ୍ରଧାନମନ୍ତ୍ରୀଙ୍କ ଏକାନ୍ତ ସଚିବଙ୍କୁ ସାର୍‌ କହିବେ । ସେ ପ୍ରଧାନମନ୍ତ୍ରୀଙ୍କି କହିବେ । ମିଶ୍ରେ କହିଲେ, 'ବିକ୍ରମପୁର କି ଚିରିକଣା ନୁହେଁ । ଏଇ ସହରରେ । ଏହାର ଉତ୍ତରପଟ ପର୍ବତର ପଛଆଡ଼େ । ଲୋକ ଲୋଚନ ଆଢୁଆଳରେ । ବଣ ଭିତରେ ।

ପଚାରିଲି, 'ସେଠି ବଣ କାହିଁ ? ପାହାଡ଼ଟା ପୂରା ନଣ୍ଡା ।'

–ପାଞ୍ଚବର୍ଷରେ ଘଞ୍ଚବଣ ହେଇଯିବ । ଏଇବର୍ଷ ଆରମ୍ଭ ହେବ । ମୋଟ ଦୁଇଶ ଏକରର କ୍ୟାମ୍ପସ୍‌ । ବଣ ଦେଢ଼ଶ ଏକର । ଘରବାରି ବାକି ପଚାଶ ଏକର । ତମ କମ୍ୟୁନିକେସନ ସେଣ୍ଟରରୁ ହୁରିଆ ସାଙ୍ଗରେ କଥାହେଇ ହବତ ?

'ବାର୍ତ୍ତା କେନ୍ଦ୍ରଟା ଅଛି କାହିଁକି ?' ଟିପ୍ପଣି କରି ଧୋବଣୀ ବାଟ କଢ଼େଇନେଲା । ମିଶ୍ର ସାର୍‌ ତାକୁ ଅନୁସରଣ କଲେ ।

ଦଶମିନିଟ୍‌ ପରେ ଦିହେଁ ହସହସ ମୁହଁରେ ଫେରିଆସିଲେ । ମିଶ୍ର ସାର୍‌ କହିଲେ, 'ଦିଲ୍ଲୀ ହୁଲୁସ୍ଥୁଲ ହଉଚି । ପ୍ରଧାନାମନ୍ତ୍ରୀ ମୁଖ୍ୟମନ୍ତ୍ରୀ ଓପରେ ରକ୍ତଚାଉଳ ଚୋବଉଚନ୍ତି । କାଲି ସେ ଯିବେ । ଆମ ମନ୍ତ୍ରୀବି ଯିବେ । ସୁରମାଦେବୀ ମୁଖ୍ୟମନ୍ତ୍ରୀ ହେବେ । ଶ୍ରୀମତୀ ସିଂହ ଓ ମଧୁବାବୁ ନିଜନିଜ ବିଭାଗର ମହାନିର୍ଦ୍ଦେଶକ ହିସାବରେ ପଦୋନ୍ନତି ପାଇବେ । ମଙ୍ଗଳା ପାହାଡ଼ ପଛରେ ନୂଆ ସ୍କୁଲ ସ୍ଥାପିତ ହବ । ଏ ବିଭାଗ ମନ୍ତ୍ରୀ, ରାଷ୍ଟ୍ରମନ୍ତ୍ରୀରୁ କ୍ୟାବିନେଟ୍‌ ମନ୍ତ୍ରୀ ହେବେ । ସବୁଯାକ ଘୋଷଣା କାଲି ସକାଳ ଆଠରେ ହେବ । ହଁ, ଆଉଗୋଟେ କଥା, ଏ ଅପରେସନ ସହ ସଂପୃକ୍ତ ସବୁ ଅଫିସରଙ୍କର ପଦୋନ୍ନତି ହେବ । ଜବାନମାନଙ୍କୁ ତିନିଟାକରି ଇନକ୍ରିମେଣ୍ଟ ମିଳିବ ।'

ଘରେ ରୁଣ୍ଡହୋଇଥିବା ସଭିଏଁ ଠିଆହେଇପଡ଼ି ଧୋବଣୀକୁ ଅଭିବାଦନ କଲେ ।

ଧୋବଣୀ କହିଲା, 'ସବୁ କୃତିତ୍ୱ ଆପଣମାନଙ୍କର । ଏଗାରଟାର କାମ ସରିଲାପରେ ଭବିଷ୍ୟତ କର୍ମପନ୍ଥା ସ୍ଥିରହେବ । ତେବେ ଦୁଃଖର କଥା, କାହାରିକୁ ଛୁଟି ମିଳିବ ନାହିଁ ।'

ଶୋଲାଙ୍କି କହିଲେ, 'ମାଡ଼ାମ୍‌ । ଆମେ ଜାଣିଥିଲୁ ଯେ ଆପଣ ମତେ ବିଡ଼ିବା ପାଇଁ ସେମିତି କହିଥିଲେ । ତେବେ ଗୋଟେ ଖବର ଶୁଣିଥାନ୍ତୁ- ଆପଣଙ୍କ ପୂର୍ଣ୍ଣସାକ୍ଷରତା ଅଭିଯାନର ମୁଖ୍ୟ କାରପଟଦାର ବାବୁ ପୁରୁଷୋତ୍ତମ ସାହାଣୀଙ୍କୁ ଟଙ୍କା ତୋଷରପାତ୍‌ ଅଭିଯୋଗରେ ପୁଲିସ୍‌ ଗିରଫ୍‌ କରିଛି ।'

'ତା ମାନେ, ମତେ ବି ଗିରଫ୍‌ କରାଯିବ ?' ପଚାରିଲା ଧୋବଣୀ ।

'ସେ ସବ୍‌ଇନ୍ସପେକ୍ଟର ମୁଣ୍ଡଟି ଏସ୍‌ପି ଚୋବେଇନଥିଲେ, ଆପଣ ଏତେବେଳେକୁ ତା ହାତରେ ଥାଆନ୍ତେ,' କହିଲେ ଶୋଲାଙ୍କି ।

–କିଏ ସେଇଟା ?

କହିଲି, 'ଧୋବଣୀ, ଭାଲୁକୁଣୀ ବିସର୍ଜନ କଥା ଭୁଲିଗଲୁ ? ମନ୍ଦରା ସାଙ୍ଗରେ ସୁରମିଳେଇ

ଯୋଉଟା ଗାଉଥିଲା ମନେ ପଡୁଚି ?'

– ସେଟାତ ଟିମା, ତାର ଏ ଦୁର୍ବୁଦ୍ଧି ହେଲା କାଇଁକି ?

– ଟିମା ମନ୍ଦରାର, ମାନେ ତମ ପଶୁପତିନାଥାନନ୍ଦଙ୍କର ଦାଦିପୁଅ ଭାଇ । ସେ ସେଦିନ ସେଠି ଥିଲା । ତତେ ବି ଚିହ୍ନିଲା । ସେଠୁ ତତେ ଫସେଇବା ପାଇଁ ଜାଲ ବିଛେଇଲା ।

'ତା'ମାନେ ତୋ ଧାରଣା ଠିକ୍ ହେଲେ ପଶୁପତି ସେଦିନୁ ଜାଣିଥିଲା ?' ପଚାରିଲା ଧୋବଣୀ ।

'ନା । ଟିମାଟା ଚିରକାଳ ମୋଟା ବୁଦ୍ଧିଆ । ତତେ ହାଜତକୁ ନେଲାପରେ ତା ଭାଇକୁ ସବୁ ଜଣେଇବ ବୋଲି ଠିକ୍ କରିଥିଲା ଯେ, ଗୋଟାଏ ଭୁଲ କରି ପକେଇଲା । ଏଫ-ଆଇ-ଆରରେ ତୋ ନାଁ ଶ୍ରୀମତୀ ସୁଧାବାଣୀ ସିଂହ ନଲେଖି ଶ୍ରୀମତୀ ଧୋବଣୀଦେଈ ଲେଖି ଦେଲା । ଏସ୍‌ପି ପ୍ରତିଦିନ ତାଙ୍କ ଜିଲ୍ଲାର ସବୁ ଏଫ୍ ଆଇ ଆର ସମୀକ୍ଷା କରନ୍ତି । ସାକ୍ଷରତା ଅଭିଯାନ ସଂକ୍ରାନ୍ତରେ ଶ୍ରୀମତୀ ଧୋବଣୀଦେଈ ନାଁ ଦେଖି କାବା ! ତମର ସବୁ ଅପରେସନ କଥା ଏସ୍‌ପି ଓ କଲେକ୍ଟରଙ୍କ ଯାଏଁ ସବୁ ଜିଲ୍ଲା ଅଧିକାରୀଙ୍କୁ ଜଣା । ତେଣୁ ତୋ ନାଁ ବଦଳରେ ଧୋବଣୀ ଦେଖି ଏସ୍‌ପି କ'ଣ ଗଡ଼ବଡ଼ ହେଇଯାଇଥିବା ସନ୍ଦେହକରି ନିଜେ ଅନୁସଂଧାନରେ ବାହାରିଲେ । ଟିମାକୁ ଜେରାକରୁକରୁ ସବୁକଥା ଜାଣିଲେ । ତାପରେ ତୁ ନଯାଇ ସେ ଗଲା ହାଜତ । ତୁ ସବୁ ଜାଣିଛୁ । ତଥାପି ମତେ ବିଡ଼ିବା ପାଇଁ ପଶୁ ସେଦିନୁ ଜାଣିଥିଲା କି ବୋଲି ମତେ ପଚାରିଲୁ । ସେ ଡ୍ରଗ୍‌ମାଫିଆଙ୍କୁ ସହଯୋଗ କରୁଥିବା ଅଭିଯୋଗ ଫର୍ଦ୍ଦ ଦାଖଲ ହୋଇସାରିଛି । ତମ ଅପରେସନଟା ସେଇ ଏସ୍‌ପିଙ୍କ ପାଇଁ ଭଣ୍ଡୁର ହେଲାନି । ତାଙ୍କପାଇଁ କ'ଣ କରୁଚୁ ?'

– ମୋ ବିଭାଗରେ ମୋ ସହକାରୀ ହେବେ । ପ୍ରଥମ ତିନିବର୍ଷ ଆମସ୍କୁଲର ସିକ୍ୟୁରିଟି ଦାୟିତ୍ୱରେ ରହିବେ ।

ଏ କଥୋପକଥନ ବେଳେ ଶୋଲାଙ୍କିଙ୍କ ପାଟି ବିସ୍ମୟରେ ମେଲା ହୋଇଯାଇଥାଏ । ସେ ପଚାରିଲେ, 'ସାର୍, ଆପଣ ଏତେ ଡ଼ିଟେଲ୍‌ସ ଜାଣିଲେ କିମିତି ?'

'ଶୋଲାଙ୍କି, ନାଟୁର ଇନ୍‌ଟୁଇସନ ବା ସହଜାତ ଜ୍ଞାନର ମହତ୍ତ୍ୱ କେବେ ଆଉ ବୁଝିବ ?'

ମଧୁବାବୁ କହିଲେ, 'ତୃତୀୟ ନୟନରେ ଦେଖି କଥା କହିଲାବେଳେ ନାଟୁବାବୁ, ନାଟୁବାବୁ ଖୋଳପା ପିନ୍ଧିଥିଲେ ବି ବାସ୍ତବରେ ତାଙ୍କ ଭିତରୁ ବୁଢ଼ାକେନ୍ଦୁଆହିଁ କହୁଥାନ୍ତି ।'



ରାଜେନ୍ଦ୍ର ପ୍ରସାଦଦାସ

ଜନ୍ମ : ଜୁଲାଇ ୧୫, ୧୯୩୦

ସମିଆଁ, କଳକଳା, ଜି : ଯାଜପୁର

୧୯୫୩:ଇତିହାସ ସ୍ନାତକୋତ୍ତର ଡିଗ୍ରୀରେ ପ୍ରଥମ ଶ୍ରେଣୀରେ ପ୍ରଥମ ଓ ବିଶ୍ୱବିଦ୍ୟାଳୟ ସର୍ଣ୍ଣପଦକ ଲାଭ

୧୯୫୧ର ପ୍ରସିଦ୍ଧ ଛାତ୍ର ଆନ୍ଦୋଳନର ଅନ୍ୟତମ ଅଗ୍ରଣୀ ନେତା

୧୯୫୪ରୁ୧୯୫୮:ରେଭେନ୍ସା କଲେଜରେ ଇତିହାସ ଅଧ୍ୟାପକ

୧୯୫୮ରୁ୧୯୬୪:କେନ୍ଦ୍ର ସରକାରଙ୍କ ଅଧୀନରେ ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣର ସହକାରୀ ଅଧୀକ୍ଷକ।

୧୯୬୫ରୁ୧୯୮୭ : ଓଡ଼ିଶାର ବିଭିନ୍ନ କଲେଜରେ ପ୍ରାଧ୍ୟାପକ ଓ ଅଧ୍ୟକ୍ଷ

୧୯୭୨ରୁ ଓଡ଼ିଶାର ଶିଳ୍ପଶାସ୍ତ୍ର ଓ ମନ୍ଦିର ଶିଳ୍ପ ସମ୍ପର୍କରେ ଗବେଷଣା

୧୯୮୭-୧୯୮୮:ଗଙ୍ଗାଧର ମେହେର କଲେଜର ଇତିହାସ ପ୍ରଫେସର୍

୧୯୮୮:ଆଜି କାଲି ପଅରିଦିନ ଉପନ୍ୟାସ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର

